# ଜୋନାଥନ୍ ଲିଭିଂଷ୍ଟୋନ୍ ସମୁଦ୍ର ପାରା

*ଏକ କାହାଣୀ*

ଲେଖକ : ରିଚାର୍ଡ଼ ବାକ୍
ଛବି : ରସେଲ୍ ମୁନ୍‌ସନ୍

ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା
(ଲେଖକଙ୍କ ସ୍ୱୀକୃତି ସହ ପ୍ରକାଶିତ)

# ଜୋନାଥନ୍ ଲିଭିଂଷ୍ଟୋନ୍ ସମୁଦ୍ରପାରା

ଲେଖକ : ରିଚାର୍ଡ୍ ବାକ୍

ଅନୁବାଦକ : ବିପ୍ରଚରଣ ପଟ୍ଟନାୟକ,
ବିନୟକୃଷ୍ଣ ପଟ୍ଟନାୟକ

ଛବି : ରସେଲ୍ ମୁନ୍‌ସନ୍

ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା



Harper Collins Publishers
77-85 Fulham Palace Road,
Hammersmith, London W6 8JB



First published in Great Britain by
Turnstone Press Ltd 1972

Reprinted forty-five times



Copies Printed : 1000

**Printed and published in Orissa (India) by BGVS with the permission from Richard Bach, the moral author of the original work.**



*This book is a non-profit publication for friends and associates of BGVS, Orissa.*

DTP : Oricon Computers,
Printer : Sri Guru Gouranga Press
Publication period : January 1997.

ଆମ ସଭିଙ୍କ ଭିତରେ
ଜିଇଁ ରହିଥିବା ଅସଲ
ଜୋନାଥନ୍ ସମୁଦ୍ରପାରାଟି
ପାଇଁ ଏହି ବହିଟି ସମର୍ପିତ ।



Richard Bach

Box 1089, Woodway, WA 98020
Phone : 206/546-9498 FAX 206/546-0273

June 13, 1996

Binaya Krushna Pattanayak
Baramunda, Bhubaneswar
Orissa, India

Dear Mr. Pattanayak:

Thank you for your kind words for *Jonathan Livingston Seagull* ! I'm delighted that you have found him, and that his adventures can be an inspiration to you and your friends.

Please consider this letter to be your permission and authorization to translate the book into the Oriya lnguage, provided :

That there be no more than 1,000 copies printed for sale on a non-profit, cost-sharing basic to your group only;

That the book will not to be offered for sale to the general public or used for any commercial purpose.

If you wish the translation to be for sale at a later date, we must discuss broader authorization and copyright fees.

If you decide to make the translation, I would be most happy to receive one copy of the book.

Thank you again, and best wishes for your continuing success.

Richard Bach

Mr. Richard Bach responded immediately after receiving our request letter with this nice letter. We express our cordial thanks to Mr. Bach for his kind co-operation & permission.

*Binaya Krushna Pattanayak*

# ଲେଖକଙ୍କ ଠାରୁ ପ୍ରକାଶନ ସ୍ୱୀକୃତିପତ୍ର

· ରିଚାର୍ଡ୍ ବାକ୍

ବକ୍ସ୍ ୧୦୮୯, ଉଦ୍‌ଓ୍ୱେ, ଡବ୍ଲ୍ୟୁ.ଏ.୯୮୦୭୦
ଫୋନ୍ : ୨୦୬ /୪୪୬-୯୪୯୮
ଫାକ୍ସ :୨୦୬ / ୪୪୬-୦୨୭୩
ଜୁନ୍ ୧୩, ୧୯୯୬

ବିନୟକୃଷ୍ଣ ପଟ୍ଟନାୟକ
ବରମୁଣ୍ଡା, ଭୁବନେଶ୍ୱର,
ଓଡ଼ିଶା, ଭାରତ ।

ପ୍ରିୟ ଶ୍ରୀ ପଟ୍ଟନାୟକ,

ଜୋନାଥନ୍ ଲିଭିଂଷ୍ଟୋନ୍ ସି'ଗଲ୍ ପାଇଁ ଆପଣଙ୍କର ଦରଦୀ ଭାବ ପାଇଁ ଧନ୍ୟବାଦ ଜଣାଉଛି । ମୁଁ ଏହା ଜାଣି ଖୁସି ଯେ ଆପଣ ତା'କୁ ଆବିଷ୍କାର କରିଛନ୍ତି ଏବଂ ତା'ର ଦୁଃସାହସିକତା ଆପଣ ଓ ଆପଣଙ୍କ ବନ୍ଧୁମାନଙ୍କ ପାଇଁ ଏକ ପ୍ରେରଣା ହୋଇପାରିବ ।

ଏହି ଲେଖାଟିକୁ ଆପଣ ଅନୁମତି ଓ ଅଧିକାର ପତ୍ର ବୋଲି ଧରିନେବେ । ଆପଣ ବହିଟିକୁ ଓଡ଼ିଆରେ ଅନୁବାଦ କରିପାରିବେ । ଆମର ସର୍ତ୍ତ ହେଉଛି :

ଆପଣ ଏକ ହଜାରରୁ ଅଧିକ ସଂଖ୍ୟା ଛାପିବେ ନାହିଁ । ଏହାକୁ କୌଣସି ଲାଭ ପାଇଁ ଛାପିବେ ନାହିଁ । କେବଳ ଖର୍ଚ୍ଚ ଭରଣା କଲା ଭଳି ଦାମ୍‌ରେ ଆପଣଙ୍କ ସାଥିମାନଙ୍କୁ ହିଁ ବିକ୍ରି କରିପାରିବେ ।

ଏହି ବହିଟିକୁ ସାଧାରଣ ଲୋକଙ୍କୁ ବା ବ୍ୟବସାୟିକ ଦୃଷ୍ଟିରୁ ବିକ୍ରି କରା ଯାଇ ପାରିବ ନାହିଁ । ଭବିଷ୍ୟତରେ ଆପଣ ଯଦି ଏହାକୁ ଅଲଗା ବିକ୍ରିବାକୁ ଚାହିଁବେ, ତେବେ ଆମେ ଏହାର ସ୍ୱତ୍ୱ ଅଧିକାର ମୂଲ୍ୟ ବିଷୟରେ ଆଲୋଚନା କରିବା ।

ଆପଣ ଅନୁବାଦ କରି ମତେ ଏହାର ଖଣ୍ଡିଏ କପି ପଠାଇପାରିଲେ ମୁଁ ସବୁଠୁ ବେଶୀ ଖୁସି ହେବି ।

ଆପଣଙ୍କୁ ପୁଣି ଧନ୍ୟବାଦ ଜଣାଉଛି ଏବଂ ଆପଣଙ୍କର ନିରନ୍ତର ଉନ୍ନତି କାମନା କରୁଛି ।

(ରିଚାର୍ଡ୍ ବାକ୍ )

ଶ୍ରୀ ରିଚାର୍ଡ୍ ବାକ୍ ଆମର ଅନୁରୋଧ ପତ୍ରଟି ପାଇବା ପରେ ପରେ ଆମକୁ ଏହି ଉତ୍ସାହପ୍ରଦ ଲେଖାଟି ପଠାଇଥିଲେ । ଶ୍ରୀ ବାକ୍‌ଙ୍କର ଏହି ସହଯୋଗ ପାଇଁ ଆମେ ତାଙ୍କ ପାଖରେ କୃତଜ୍ଞ ।

ବିନୟକୃଷ୍ଣ ପଟ୍ଟନାୟକ

**ରିଚାର୍ଡ ବାକ୍** ଜଣେ ଲେଖକ ଓ ବିମାନ ଚାଳକ । ଉଡ଼ାଣର ଚମତ୍କାରିତା ସମ୍ପର୍କରେ ସେ ତିନି ଖଣ୍ଡ ବହି ଲେଖିଛନ୍ତି । ଗତ ଏକ ଦଶକ ଧରି ସେ ଉଡ଼ାଣ ବିଷୟରେ ଗୋଟିଏ ପତ୍ରିକାର ସମ୍ପାଦନା କରୁଛନ୍ତି । ବିଭିନ୍ନ ପତ୍ରିକାରେ ସେ ଶହେରୁ ଅଧିକ ପ୍ରବନ୍ଧ ଓ କାହାଣୀ ଲେଖିଛନ୍ତି । ଆଗରୁ ସେ ଆମେରିକାର ଜଣେ ବିମାନ ଚାଳକ ଥିଲେ । ଏବେ ବି ତାଙ୍କର ଉଡ଼ାଣ ଅଭ୍ୟାସ ଜାରି ଅଛି ।

**ରସେଲ୍ ମୁନ୍‌ସନ୍** ପିଲାବେଳେ ଉଡ଼ାଜାହାଜର ଛବି ତୋଳୁଥିଲେ । ସେବେଠାରୁ ତାଙ୍କର ଉଡ଼ାଣ ଓ ଛବି ତୋଳା ରୁଚି ଜାରି ଅଛି । ତାଙ୍କ ନିଜର ଗୋଟିଏ ବିମାନ ଅଛି । ଏ ବହିର ଛବିଗୁଡ଼ିକୁ ସେ ସେହି ବିମାନରୁ ଉଠାଇଥିଲେ ।

**ବିପ୍ରଚରଣ ପଟ୍ଟନାୟକ** ଜଣେ ଦରଦୀ ଗୁରୁଜୀ ଓ ଚିକିତ୍ସକ । ତାଙ୍କ ଶିକ୍ଷକତା ଶ୍ରେଣୀର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ନ ରହି ପୂରା ସମାଜ ପାଇଁ ଉଦ୍ଦିଷ୍ଟ । ଫୁଲବାଣୀର ମାଳ ଅଞ୍ଚଳରେ ରହି ସେ ଶିକ୍ଷକତା ସହିତ ମାଗଣା ହୋମିଓପାଥି ଚିକିତ୍ସା ଓ ସମାଜ ସଂସ୍କାରରେ ନିୟୋଜିତ ।

**ଭାରତ ଜ୍ଞାନ ବିଜ୍ଞାନ ସମିତି** ଏକ ଜନ ବିଜ୍ଞାନ ମଞ୍ଚ । ସମାଜରେ ବିଜ୍ଞାନ ଭିତ୍ତିକ ଶିକ୍ଷା, ସ୍ୱାସ୍ଥ୍ୟ, ଜୀବନ ଓ ଚେତନାର ବିକାଶ ପାଇଁ ଉଦ୍ୟମଶୀଳ । ପ୍ରତ୍ୟେକ ସୃଜନଶୀଳ ଓ ସମାଜପ୍ରେମୀ ବ୍ୟକ୍ତିତ୍ୱ ପାଇଁ ଏହା ଏକ ଖୋଲା ମଞ୍ଚ ପ୍ରତ୍ୟେକ ସାଥି ପାଇଁ ସର୍ବାଧିକ ସ୍ୱାଧୀନତା ସାଙ୍ଗକୁ ତାଙ୍କର ସୃଜନଶୀଳତାର ବିକାଶ ଓ ଉପଯୋଗିତା ପାଇଁ ଏକ ସୁଯୋଗସ୍ଥଳୀ । ବିନୟକୃଷ୍ଣ ପଟ୍ଟନାୟକ ସମିତିର ଜଣେ ସାଥି ବିଜ୍ଞାନୀ ।

ଯେଉଁମାନଙ୍କ ପ୍ରବଳ ଉତ୍ସାହ ଓ ସହଯୋଗରେ ଏହି ବହିଟି ଏହି ରୂପରେ ଆପଣଙ୍କ ହାତରେ ପହଞ୍ଚିପାରିଛି :

ସଂଯୋଜକ ଶ୍ରୀ ସୁବ୍ରତ ରାଉତ, ଡାକ୍ତର ଶ୍ରୀ ମଦନମୋହନ ପ୍ରଧାନ, ଶିକ୍ଷାବିତ୍ ଶ୍ରୀ ଚିତ୍ତରଞ୍ଜନ ଦାସ, ଅଧ୍ୟାପିକା ଶ୍ରୀମତୀ ସରୋଜିନୀ ପଟ୍ଟନାୟକ, ଅଧ୍ୟାପକ ଶ୍ରୀ ମଦନମୋହନ ସାହୁ, ସଂଯୋଜକ ଶ୍ରୀ ସୁଧୀର ପଟ୍ଟନାୟକ, ସଂଯୋଜକ ଶ୍ରୀ ସତ୍ୟ ନାରାୟଣ ପଟ୍ଟନାୟକ, ଚିତ୍ରକର ଶ୍ରୀ ଜୟଦ୍ରଥ ଚୌଧୁରୀ, ସହକର୍ମୀ ଶ୍ରୀ ଦେବେନ୍ଦ୍ର ରାଉତ, ଅଧ୍ୟାପକ ଶ୍ରୀ ବିଜୟ କୁମାର ସ୍ୱାଇଁ, ବିଜ୍ଞାନକର୍ମୀ ଶ୍ରୀ ବିଜୟକୃଷ୍ଣ ପଟ୍ଟନାୟକ ଓ ଜନବିଜ୍ଞାନୀ ଶ୍ରୀ କୃଷ୍ଣ କୁମାର ।

# ଆମ ଆଡ଼୍ରୁ ଦୁଇ ପଦ.....

ରିଚାର୍ଡ଼ ବାକ୍ଙ୍କର 'ଜୋନାଥନ୍ ଲିଭିଂଷ୍ଟୋନ୍ ସମୁଦ୍ର ପାରା' ଏକ ସୁଖପାଠ୍ୟ, ସରଳ କାହାଣୀ । କିନ୍ତୁ ପାଠକ ମନରେ ଚେତନାକୁ ତେଜି ବିଚାରବନ୍ତ ଭାବରେ ବିଶ୍ୱାସକୁ ଟାଣ କରିବାରେ କାହାଣୀଟି ବେଶ ଉପଯୋଗୀ ପ୍ରତ୍ୟେକ ଚେତନାରେ ଏହା ଏକ ଉଜ୍ଜ୍ୱଳ ସୂର୍ଯ୍ୟୋଦ଼ୟ କରାଇପାରେ ।

ଭାରତୀୟ ପାଠକଙ୍କ ପାଇଁ ଏହି କାହାଣୀଟି ଅଧିକ ଉପଯୋଗୀ ମନେ ହୁଏ । ପ୍ରାଣ ଶକ୍ତି କିମ୍ବା ଆତ୍ମା ଶକ୍ତି ସବୁ ଶକ୍ତିର ଆଧାର ଏବଂ ସାଧନା ଦ୍ୱାରା ମଣିଷ ଦେବତା ହୋଇ ପାରେ....ଏହା ଆମର ଆଧ୍ୟାତ୍ମିକ ଓ ସାଂସ୍କୃତିକ ଧାରଣା । ଉପନିଷଦ, ଗୀତା ଆଦି ପ୍ରାୟ ସବୁ ପ୍ରଗତିଶୀଳ ବିଚାରର ଗଭୀର ଅର୍ଥ ବି ଏହି ଜକମର । ସବୁଠାରେ ଚେତନାର ବିକାଶ ଓ ଉତ୍କର୍ଷତାକୁ ହିଁ ସବୁଠାରୁ ବେଶୀ ଗୁରୁତ୍ୱ ଦିଆଯାଇଛି । ଏଥିପାଇଁ ଆମର ବିଭିନ୍ନ ବହୁଳ ଆଦୃତ ଗ୍ରନ୍ଥରେ ପକ୍ଷୀ, ବାନର, ଭାଲୁ, ଆଦିଙ୍କୁ ମଧ ଉଚ୍ଚ ଆସନ ମିଳିଛି ।

ରିଚାର୍ଡ଼ ବାକ୍ ଏଠାରେ ଜୋନାଥନ୍ ସମୁଦ୍ର ପାରାଙ୍କୁ ସେହିପରି ରୂପ ଦେଇଛନ୍ତି । ମଣିଷ ମନ ଥରେ ନିଜକୁ ବୁଝି ବୁଝାଇ ପାରିଲେ ଯଥେଷ୍ଟ ବିକାଶ କରିପାରେ । ଏହି ଲେଖାଟି ମଣିଷର ସ୍ୱପ୍ନ ଓ ସାମର୍ଥ୍ୟକୁ ଯଥେଷ୍ଟ ତେଜି ଦେଇପାରେ । ବିଶ୍ୱାସ ପାଇ ପାଠକ ଅଧିକ ଦକ୍ଷ ଓ ଯୁବତ୍ୱ ଅନୁଭବ କରେ ।

ଏଇ ଧାରଣାରେ ଏହି ଅନୁବାଦ । ପାଠକଙ୍କ ବିଚାରବନ୍ତ ବୁଝାମଣା ଆଶାକରୁଛୁ । ବହିଟିର ସ୍ୱତ୍ୱ ମୂଲ୍ୟ ଦାବୀ ନ କରି ଆମ ଭାଷାରେ ଛାପିବାକୁ ଉତ୍ସାହ ଓ ଅନୁମତି ଦେଇଥିବାରୁ ବହିଟିର ସ୍ରଷ୍ଟା ଶ୍ରୀ ରିଚାର୍ଡ୍ ବାକ୍‌ଙ୍କୁ ଆମର ଆନ୍ତରିକ ଧନ୍ୟବାଦ ଜଣାଉଛୁ ।

ଆଗରୁ ଆମେ ଶୁଣିଥିଲୁ ଯେ ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ ଅଧ୍ୟାପକ ଚନ୍ଦ୍ରଶେଖର ରଥ ଏହି ବହିଟିର ମର୍ମାନୁବାଦ କରିଥିଲେ । କିନ୍ତୁ ମୂଳ ବହି ରୂପରେ ଏହାକୁ ଛପାଯାଇ ନଥିଲା । ଆମର ଅନୁବାଦ ପାଣ୍ଡୁଲିପିଟି ଛପାକଳରେ ଥିଲାବେଳେ ଆମେ ଶ୍ରୀଯୁକ୍ତ ରଥଙ୍କର ପାଣ୍ଡୁଲିପିଟିକୁ ଦେଖିବାର ସୁଯୋଗ ପାଇଥିଲୁ । କାମଟି ପାଇଁ ଆମକୁ ଉତ୍ସାହିତ କରିଥିବାରୁ ଆମେ ତାଙ୍କ ପ୍ରତି କୃତଜ୍ଞ ।

ଏହି ବହିଟି ଦ୍ୱାରା ଆମେ ସମସ୍ତେ ଲାଭବାନ୍ ହୋଇପାରିବା ବୋଲି ଆଶା ।

ଅନୁବାଦକ



ସକାଳ ସମୟ । ନୂଆ ସୁରୁଜର ସୁନେଲି ଆଲୋକରେ ଶାନ୍ତ ସମୁଦ୍ର ପାଣି ଝଲସି ଉଠୁଥିଲା ।

କୂଳରୁ ମାଇଲିଏ ଦୂରରେ ମାଛଧରା ନାଆଟିଏ ପାଣି ଭିତରକୁ ପଶି ଆସିଲା । ମନେ ହେଲା ଯେମିତି ଜଳଖିଆ ସମୟ ହୋଇଗଲା । ହଜାରେ ସରିକି ସମୁଦ୍ର ପାରା କୂଳରୁ ଉଡ଼ି ଆସିଲେ ସମୁଦ୍ର ଉପରକୁ ଦାନା ଖୋଜିବାକୁ ଓ ବଞ୍ଚିବା ପାଇଁ ଲଢ଼େଇ କରିବାକୁ । ଚାଲିଲା ପୁଣି ଏକ ଦିବସର କାମ ଆଉ କାମ ।

କିନ୍ତୁ କୂଳ ଓ ନାଆଠାରୁ ବେଶ୍ ଦୂରରେ ଏକା ଏକା ଉଡ଼ି ବୁଲୁଥିଲା ଜୋନାଥନ୍ ସମୁଦ୍ର ପାରା । ସମୁଦ୍ରଠାରୁ ଶହେ ଫୁଟ ଉଚ୍ଚରେ ସେ ତା'ର ଜାଲୁଆ ପାଦ ଦୁଇଟିକୁ ତଳକୁ ଓହଳେଇ ଦେଲା, ଥଣ୍ଟିକୁ ଉପରକୁ ଉଠେଇ ଦୁଇ ଡ଼େଣାରେ ମୋଡ଼ ଦେଲା । କଷ୍ଟକର ହେଲେ ହେଁ ଡ଼େଣା ଦୁଇଟିକୁ ମୋଡ଼ି ଧୀରେ ଉଡ଼ିବାରେ ଲାଗିଲା । କ୍ରମଶଃ ତଳେ ସମୁଦ୍ର ପାଣି ସ୍ଥିର ହେଲା ପରି ଦିଶିଲା । ପବନ ତା' କାନରେ କିଛି କହିଲା ପରି ଲାଗିଲା । ସେ ତା'ର ଆଖି ଦୁଇଟିକୁ ସାଙ୍କୁଡ଼ି ନେଇ ଏକାଗ୍ରତାର ସହ ତଳକୁ ଚାହିଁଲା । ଚାହାଣୀ ଅଳପରୁ ଅଳପ ଜାଗାରେ ଲାଖି ରହିଲା. . . ଗୋଟିଏ ଜାଗା . . . ଏକ ଇଞ୍ଚ . . . ଗୋଟିଏ ଟୋପା. . .।

ସେ ଡ଼େଣାରେ ମୋଡ଼ ଦେଲା । ଡ଼େଣା ଦୁଇଟିକୁ ଝାଡ଼ି ଚକ୍କର କାଟିଲା । ତା' ଡ଼େଣାର ପର ସବୁ ଅଲରା ହୋଇ ମଛି ହୋଇଗଲା । ଧିମେଇବାକୁ ଯାଇ ସେ ଆଉ ସମ୍ଭାଳି ପାରିଲା ନାହିଁ । ତଳକୁ ଖସି ପଡ଼ିଲା । ସଭିଏଁ ଜାଣନ୍ତି ଯେ, ସମୁଦ୍ର ପାରାମାନେ କେବେ ଧିମେଇ ଉଡ଼ନ୍ତି ନାହିଁ, କି ଉପରେ ସ୍ଥିର ହୋଇ ରହନ୍ତି ନାହିଁ । ସେଇଟା ସମୁଦ୍ର ପାରା ପାଇଁ ଅପମାନ ...ଏକ ଇତର କାମ ।

କିନ୍ତୁ ସମୁଦ୍ର ପାରା ଜୋନାଥନ୍ ଲିଭିଂଷ୍ଟୋନ୍‌କୁ ଏହା ଅପମାନ ଲାଗୁ ନଥିଲା; ସେ ତାର ଲମ୍ବା ଡ଼େଣାକୁ ଦୁଇ ପଟେ ଲମ୍ବେଇ ଦିଏ । ଡ଼େଣାକୁ ମଝିରୁ ଭାଙ୍ଗି ଗତିକୁ ଧୀର କରେ । ଆହୁରି ଅଧିକରୁ ଅଧିକ ଧୀର ହୁଏ । . . . ସ୍ଥିର ହୋଇ ରହେ . . . ଜୋନାଥନ୍ ଅନ୍ୟମାନଙ୍କ ପରି ସାଧାରଣ ଚଢ଼େଇଟିଏ ନ ଥିଲା ।

ଅଧିକାଂଶ ପାରା ସାଧାରଣ ଉଡ଼ାଠାରୁ ଅଧିକା କିଛି ଶିଖିବାକୁ ଚାହୁଁ ନଥିଲେ । କୂଳରୁ ଉଡ଼ି ଉଡ଼ି ଯାଇ ଦାନା ଧରି କୂଳକୁ ଫେରି ଆସୁଥିଲେ । ତାଙ୍କ ପାଇଁ ଖାଲି ଉଡ଼ିବାର କିଛି ନୀତି ନିୟମ ଜାଣିଗଲେ ହେଲା । ବେଶ୍, ସେତିକିରେ ସଭିଏଁ ଖୁସି । ଖାଇବା ପାଇଁ ଉଡ଼ିବା କଥା । ମାତ୍ର ଜୋନାଥନ୍‌ର କଥା ଥିଲା ଅଲଗା । **ତା'ର ସଉକ ଥିଲା ଉଡ଼ିବାରେ, ଖାଇବାରେ ନୁହେଁ** । ଏଇ ଉଡ଼ିବାଟାକୁ ସେ ସବୁଠୁ ବେଶୀ ଭଲ ପାଉଥିଲା ।

ଏଥିପାଇଁ ଅନ୍ୟ ପାରାମାନେ ତା'କୁ ଭଲ ପାଇବେ ବୋଲି ସେ ଏପରି କରୁ ନଥିଲା । ଅନ୍ୟ ପାରାମାନେ ତା'ର ଏ ଭାବନାକୁ ଭଲ ପାଉ ନ ଥିଲେ । ସେ ଦିନସାରା ଏକା ଏକା ଅଳପ ଉଚ୍ଚରେ ତଳ ଉପର, ଓଲଟ ପାଲଟ ହୋଇ ଉଡ଼ିବାର ସବୁ ଦିଗ ପରଖି ଦେଖୁଥିଲା । ତା' ମା'ବାପା ବି ତା'ର ଏହି ଗତିବିଧିକୁ ନାକ ଟେକୁଥିଲେ ।

ସେ ଜାଣି ନ ଥିଲା ତା'ର କାରଣ । କିନ୍ତୁ ଡ଼େଣାକୁ ଅଧା ଖୋଲି ବେଶ୍ କିଛି ଉଚ୍ଚରେ ସେ ସ୍ଥିର ହୋଇ ରହି ପାରୁଥିଲା । ବେଶୀ କିଛି ବଳ ନ ଖଟେଇ ବି ପାଣି ଉପରେ ପବନରେ ସେ ବେଶ୍ ସମୟ ସ୍ଥିର ଭାବେ ରହି ପାରୁଥିଲା ।

ଅନ୍ୟ ସମୁଦ୍ର ପାରାଙ୍କ ପରି ଦୁଇ ପାଦକୁ ତଳକୁ ଓହଳାଇ ସେ ପାଣିକୁ ଝାସ ଦେଉ ନଥିଲା । ଅନେକ ସମୟ ସରଳ ଭାବେ ଧିରେ ଧିରେ ଉଡିଲା ପରେ ଛାତିରେ ପାଦ ଦୁଇଟାକୁ ଚାପି ରଖି ସେ ବେଶ୍ ସହଜରେ ପାଣି ଉପରକୁ ଖସି ଆସୁଥିଲା ପାଦକୁ ଦେହ ସହିତ ଲଗାଇ କୂଳର ବାଲିକୁ ଛୁଇଁଲା ପରେ ସେ ପାଦ ପକାଇ ଚାଲୁଥିଲା । ହେଲେ ତା'ର ମା' ବାପା ଏଇଆ ଦେଖି ବେଶି ଅସୁଖୀ ହେଉଥିଲେ ।

"କାହିଁକିରେ ଜୋନ୍, କାହିଁକି ?" ତା' ମାଆ ପଚାରୁଥିଲେ । ଅନ୍ୟ ସମୁଦ୍ର ପାରାଙ୍କ ପରି ହେବାରେ ତୋ'ର ଅସୁବିଧା କ'ଣ ? ତୁ କାହିଁକି ଏମିତି ଏତେ କମ୍ ଉଚ୍ଚରେ ଉଡୁଛୁ-ତୁ କ'ଣ ପେଙ୍ଗୁଇନ୍ ନା ଆଲ୍‌ବାଟ୍ରସ୍ ? ସେମାନେ ସେପରି ଉଡ଼ନ୍ତୁ । ତୁ କାହିଁକି ସେମିତି ଉଡ଼ିବୁ ? ତୁ ଖାଉନୁ କିଆଁ ? ପୁଅ ତୋ' ଦେହରେ ଏଇନା କେବଳ ଦି'ଖଣ୍ଡ ହାଡ଼ ଆଉ ପର ଅଛି !"

"ମା' ମୁଁ ଦେହର ଏ ହାଡ଼, ପରକୁ ନଜର ଦିଏନି । ମୁଁ ଖାଲି ଏତିକି ଜାଣିବାକୁ ଚାହେଁ -ମୁଁ ପବନରେ କ'ଣ କରି ପାରିବି; ଆଉ କ'ଣ କରି ପାରିବି ନାହିଁ । ବେଶ୍ ସେତିକି ...ମୁଁ ଖାଲି ଜାଣିବାକୁ ଚାହେଁ ।"

"ଇଆଡ଼େ ଦେଖ, ଜୋନାଥନ୍ " ତା' ବାପା କହିଲେ ତାଙ୍କ କଥାରେ କଠୋରତା ନ ଥିଲା । " ଶୀତ ପଡ଼ିବାକୁ ଆଉ ବେଶି ଦିନ ନାହିଁ । ତେଣିକି ନାଆ ସଂଖ୍ୟା ବି କମିଯିବ । ଉପର ପାଣିର ମାଛ ସବୁ ଗହୀରକୁ ଚାଲିଯିବେ ।"

"ଗହୀରକୁ ତୁ ଯଦି ଜାଣିବାକୁ ଚାହୁଁଛୁ, ତେବେ ଦାନା କଥା ଜାଣେ, ଶିଖେ - ଦାନା କିପରି ମିଳେ । ତୋ'ର ଏଇ ଉଡ଼ିବା ଉପରେ

ଜୋର୍ ଦେବାଟା ବେଶ୍ ଭଲ । କିନ୍ତୁ ଖାଲି ଏଇମିତି ଉଡ଼ିଲେ , ତୁ ଦାନା କଣିକାଏ ବି ପାଇବୁନି । ତୁ କାହିଁକି ଭୁଲି ଯାଉଛୁ ଯେ, ତୋ'ର ଏଇ ଉଡ଼ିବାଟା ଖାଲି ଦାନା ପାଇବା ପାଇଁ ? ''

ଜୋନାଥନ୍ ବୋଲ ମାନିଲା ଭଳି ମୁଣ୍ଡ ଟୁଙ୍ଗାରିଲା । କିଛି ଦିନ ପାଇଁ ସେ ଅନ୍ୟ ସବୁ ପାରାଙ୍କ ପରି ଉଡ଼ା ବୁଲା କଲା । ସତକୁ ସତ ଲାଗି ପଡ଼ିଲା –ଝାମ୍ପ ମାରିବା ଆଉ ଦାନା ପାଇଁ ଲଢ଼ିବାରେ । ନାଆ ଆଉ ପାଲ ଉପରେ ଝାମ୍ପ ମାରି ମାଛ, ରୁଟି ଖଣ୍ଡ ଆଦି ଦଳ ସାଥିରେ ଶିକାର କଲା । ହେଲେ ..... ଏ କାମରେ ତା'ମନ ଲାଗିଲା ନାହିଁ ।

ସେ ଭାବିବାକୁ ଲାଗିଲା : ଏମିତିକା କାମ ପୂରାପୂରି ଅଯଥା, ଅକାରଣ । ଲାଗି ପଡ଼ି ଧରି ଆଣିଥିବା ଛୋଟ ମାଛଟିଏ ଜାଣିଶୁଣି ପଛରେ ଗୋଡ଼ାଉଥିବା ଏକ ଭୋକିଲା ବୁଢ଼ା ପାରା ପାଖରେ ଖସେଇ ପକେଇ ଦେବା ଭଳି କାମ କରି ସେ ଖୁସି ହୋଇ ପାରିଲାନି । ସେ ଭାବିଲା- ଏ ସମୟଟା ଉଡ଼ିବାରେ ଲାଗିଥିଲେ ସେ ବେଶ୍ କିଛି ଶିଖି ପାରିଥାନ୍ତା । ଉଡ଼ିବାରେ କେତେ ଯେ ଶିଖିବାକୁ ଅଛି ।

ଆଉ ବେଶି ଡ଼େରି ନ କରି ଜୋନାଥନ୍ ପୁଣି ଦୂର ସମୁଦ୍ର ଭିତରକୁ ଉଡ଼ିଗଲା । ସେ ଭୋକିଲା ଥିଲା, କିନ୍ତୁ ବେଶ୍ ଖୁସି ଥିଲା, କାରଣ ସେ ଶିଖୁଥିଲା ।

ତା'ର ମନ ଥିଲା ବେଗ ଉପରେ । ଗୋଟିଏ ସପ୍ତାହ ଲାଗି ପଡ଼ିବା ପରେ ସେ ବିଷୟରେ ସେ ବହୁତ କିଛି ଶିଖି ପାରିଲା –ଏପରିକି ତା ବେଳର ସବୁଠୁ ତେଜା ସମୁଦ୍ର ପାରାଙ୍କ ଠାରୁ ବି ବେଶି ।

ସେ ଏଥର ହଜାରେ ଫୁଟ ଉଚ୍ଚରୁ , ଡ଼େଣାକୁ ବାଡ଼େଇ ସବୁ ବଳ ଖଟେଇ ସମୁଦ୍ରର ଲହରୀ ଉପରକୁ ଝାମ୍ପ ମାରିବା ଜାଣିଗଲା । ତାର ସାଥି ଅନ୍ୟ ସମୁଦ୍ରପାରାମାନେ କାହିଁକି ଏପରି ତୋଫାନି ଝାମ୍ପ ମାରନ୍ତି ନାହିଁ —ତା'ର କାରଣ ମଧ୍ୟ ସେ ବୁଝିଗଲା । ମାତ୍ର ଛଅ ସେକେଣ୍ଡ ଭିତରେ ତା' ବେଗ ଘଣ୍ଟାକୁ ସତୁରୀ ମାଇଲରେ ପହଞ୍ଚି ଯାଉଥିଲା । ଏହି ବେଗରେ ଝାମ୍ପ ମାରି ଉପରକୁ ଉଠିବା ସମୁଦ୍ରପାରାଟିଏ ପାଇଁ ସହଜ କଥା ନଥିଲା ।

ଥରକୁ ଥର ସେ ଅଭ୍ୟାସ କରି ଚାଲିଲା । ସେ ବେଶ୍ ସତର୍କ ଥିଲା । ନିଜର ସବୁ ପାରିଲାପଣିଆ ଖଟେଇ ସେ ଅତି ବେଗରେ ଉଡ଼ିଗଲା ବେଳେ ବେଗ ଉପରେ ତା'ର ଆଉ ଆୟତ୍ତ ରହୁ ନଥିଲା ।

ସେ ହଜାରେ ଫୁଟ ଉପରକୁ ଉଠିଯାଉଥିଲା । ପ୍ରଥମେ ପୂରା ଦମ୍‌ରେ ଆଗକୁ ଛୁଟୁଥିଲା । ତା'ପରେ ଠେଲା ମାରି, ଡ଼େଣା ବାଡ଼େଇ ସେ ସିଧା ତଳକୁ ଖସିବା କଥା । ପ୍ରତିଥର ଉଠିଲା ବେଳେ ତା' ବାଁ ଡ଼େଣାଟି ସ୍ଥିର ରହିଯାଉଥିଲା । ଫଳରେ ସେ ଖୁବ୍ ଜୋରରେ ବାଁ ପଟକୁ ଘୂରି ଯାଉଥିଲା । ସାଙ୍ଗେ ସାଙ୍ଗେ ସେ ତା' ଡ଼ାହାଣ ଡ଼େଣାକୁ ସ୍ଥିର କରି ଦେଉଥିଲା । ଫଳରେ ସେ ଡ଼ାହାଣକୁ ଖୁବ୍ ଜୋରରେ ଘୂରି ଘୂରି ନିଆଁଖଣ୍ଡେ ପରି ତଳକୁ ଖସି ପଡୁଥିଲା ।

ସେ ଉପରକୁ ଉଠିଲାବେଳେ କେବେହେଲେ ସତର୍କ ହୋଇ ପାରୁ ନଥିଲା । ସାଏଁକିନା ଘଣ୍ଟାକୁ ସତୁରୀ ମାଇଲ୍ ବେଗରେ ଉପରକୁ ଉଠିଗଲା ବେଳେ ପିଟି ହୋଇ ପାଣିରେ ପଡ଼ିଯାଏ । ପରରେ ତିଆରି ପେଣ୍ଡୁଟିଏ ପରି ସେ ଦଶଥର ଏପରି ପଡ଼ିଥିବ; ହେଲେ ବି ସେ ତା' ଅଭ୍ୟାସ ଚାଲୁ ରଖୁଥିଲା ।

ଏଥର ସେ ବୁଝିପାରିଲା । ତାକୁ ଲାଗିଲା ସତେ ଯେପରି ସେ ଉତ୍ତରଟି ପାଇଯାଇଛି । ପାଣିରେ ନ ପଡ଼ିବା ପାଇଁ ଡ଼େଣା ଦୁଇଟାକୁ ଅଧା ବାଟ ଯାଏଁ ସିଧା ଖୋଲା ରଖି, ପରେ ପରେ ଉଭୟ ଡ଼େଣାକୁ ବାଡ଼େଇ ଉଡ଼ିବା ଦରକାର ବୋଲି ସେ ଶିଖିଲା ।

ତା'ପରେ ସେ ଦି'ହଜାର ଫୁଟ ଉପରୁ ଲମ୍ଫ ଦେବାକୁ ଲାଗିଲା । ଥଣ୍ଟକୁ ସିଧା ତଳମୁହାଁ କରି , ଡ଼େଣା ଦୁଇଟାକୁ ପୂରା ଖୋଲିଦେଇ ସେ ଚକ୍କର ମାରିଲା । ପହିଲେ ଘଣ୍ଟାକୁ ଚାଳିଶ୍ ମାଇଲ ବେଗରେ ଗତି କରି ଦେଖିଲା, ତାକୁ ଦଶ ସେକେଣ୍ଡ୍ ଲାଗିଛି ; ଏହା ମଧ୍ୟରେ ତା' ବେଗ ଘଣ୍ଟାକୁ ନବେ ମାଇଲ ବଢ଼ିଯାଇଛି । ସେ ଏବେ ଧୂଆଁଳିଆ ଦେଖା ଯାଉଥାଏ । ଏଥିପାଇଁ ଦେହରେ ବଳ ବହୁତ ନ ଖଟେଇଲେ ନ ହୁଏ । ହେଲେ ସବୁ ସମୁଦ୍ର ପାରାଙ୍କ ପାଇଁ ଇଏ ଗୋଟେ ରେକର୍ଡ଼ !!

କିନ୍ତୁ ସେ ଅଧିକ ସମୟ ପାଇଁ ଖୁସି ହୋଇପାରିଲା ନାହିଁ । କାରଣ ଯେତେବେଳେ ଘଣ୍ଟାକୁ ନବେ ମାଇଲ୍ ବେଗରେ ଲମ୍ଫ ମାରି ସେ କଡ଼ ମୋଡ଼ି ଦିଗ ବଦଳାଉଥିଲା , ସେତେବେଳେ ପୁଣି ସେଇ ବିପଦ ; ସେ ପାଣିରେ ପଡ଼ିଯାଉଥିଲା । ପବନରେ ସେ ନିଜକୁ ବେଶ୍ ଆୟତ୍ତ କରି ପାରୁଥିଲା; କିନ୍ତୁ ତଳକୁ ଡ଼େଇଁଲା ବେଳେ, ଇଟା ପରି ଟାଣ ପାଣି ଉପରେ କଚାଡ଼ି ହୋଇ ପଡ଼ି ଯାଉଥିଲା !

ତା'ର ଚେତା ଫେରିଲା ବେଳକୁ ଅନ୍ଧାର ବେଶ୍ ଘନେଇ ଆସିଥିଲା । ଜହ୍ନ ଆଲୁଅରେ ସମୁଦ୍ରପାଣି ଉପରେ ସେ ଭାସିବାକୁ ଲାଗିଲା । ତା' ପରଗୁଡ଼ିକ ସୀସା କାଠି ପରି ଟାଣ ଓ ଓଜନିଆ ଥିଲା । ହେଲେ ଉଡ଼ିବାରେ ଯେଉଁ ବିଫଳତା, ସେଇଟା ତା'କୁ ବେଶୀ ବାଧୁଥିଲା; ଏହା ତା'ର ଦେହଟାକୁ ବେଶ୍ ଓଜନିଆ କରି ଦେଉଥିଲା ।

ସେଇ ଓଜନରେ ପାଣି ଭିତରକୁ , ଆହୁରି ତଳକୁ ନେଇ ନିଜକୁ ଶେଷ କରି ଦେବାକୁ ତା'ର ମନ ହେଉଥିଲା । ଦେହଟାକୁ ସବା ତଳକୁ ନେବା ପାଇଁ ତା'ର ଓଜନ ବି ବେଶ୍ ଥିଲା । ସେ ବୁଡ଼ିଲା ... ତଳକୁ , ତଳକୁ ।

ହଠାତ୍ ତା' ଭିତରୁ ଏକ ଅଜଣା ସ୍ୱର ଶୁଣାଗଲା : " ...ମୁଁ ଏକ ସମୁଦ୍ର ପାରା । ସେ ଅନୁସାରେ ମୋ ପାଇଁ ସୀମା ରହିଛି । ମୁଁ ଉଡ଼ିବା ବିଷୟରେ ଆହୁରି ଅଧିକା ଜାଣିବାକୁ ଚାହିଁଲେ, ମୋତେ ମୁଣ୍ଡ ଖଟେଇବାକୁ ହେବ । ମୁଁ ଯଦି ଅଧିକ ବେଗରେ ଉଡ଼ିବି, ତା'ହେଲେ ବାଜ ପକ୍ଷୀ ଭଳି ମୋର ଛୋଟ ଛୋଟ ଡ଼େଣା ଥାଆନ୍ତା ; ଆଉ ମାଛ ବଦଳରେ ମୁଁ ମୂଷା ଛୁଆ ଖାଉଥାନ୍ତି । "

" ମୋ ବାପା ଠିକ୍ କହିଛନ୍ତି । ମୁଁ ମୋର ଏଇ ବୋକାମୀ ଛାଡ଼ିବା ଦରକାର । ମୁଁ ମୋର ଘରକୁ ... ମୋର ଦଳ ଭିତରକୁ ଫେରିଯିବା ଦରକାର । ଜଣେ ସମୁଦ୍ର ପାରା ହୋଇଥିବାରୁ ସେ ଅନୁସାରେ ମୁଁ ସୁଖରେ, ସୀମା ଭିତରେ ରହିବା ଦରକାର । "

କ୍ରମେ ଭିତରର ସେହି ସ୍ୱର ନୀରବ ହେଲା । ଜୋନାଥନ୍ ରାଜି ହୋଇଗଲା । ରାତିରେ ସମୁଦ୍ର ପାରାର ଜାଗା କୂଳରେ । ସେହି ସମୟରୁ ଠିକ୍ ଶପଥ ନେଲା ପରି ଜୋନାଥନ୍ ସ୍ଥିର କଲା ଯେ, ସେ ଏଣିକି ଏକ ସାଦାସିଧା ସମୁଦ୍ର ପାରା ହିଁ ହେବ... ସବୁ ସାଥିଙ୍କୁ ସୁଖୀ କରିବ ।

ସେ ଧୀରେ ପାଣି ତଳ ଅନ୍ଧାରରୁ ଉପରକୁ ଉଠି ଆସିଲା ଓ କୂଳକୁ ଉଡ଼ିଗଲା । ସେ ମନରେ ଠିକ୍ କରିଥିବା କଥା ଅନୁସାରେ ଅଳପ ଉଚ୍ଚରେ ଉଡ଼ି କାମକୁ ହାଲୁକା କରିବ । ଏଇ ଭାବନାରେ ସେ ବେଶ୍ ଖୁସି ହୋଇଉଠିଲା ।

ସେ ପୁଣି ଭାବିଲା । କିନ୍ତୁ ମନକୁ ବୁଝେଇ ଦେଲା; ନା, ସେ ବାଟ ଛାଡ଼ିଛି ତ ଛାଡ଼ିଛି । ସେ ଶିଖିବା ଯେତିକି ହେଲା ସେତିକି । ମୁଁ ଅନ୍ୟମାନଙ୍କ ପରି ଏକ ସମୁଦ୍ର ପାରା, ସେହିପରି ଉଡ଼ିବି । ତେଣୁ ଶହେ ଫୁଟ ଉପରକୁ କଷ୍ଟରେ ଉଡ଼ିଲା ପରେ ଡ଼େଣା ବାଡ଼େଇ ସେ ପୁଣି ଭୂମି ଉପରକୁ ଆସି ଯାଉଥିଲା ।

ନିଜ ଜାତିର ଜଣେ ହିସାବରେ ରହିବାର ଏଇ ଚଳଣିରେ ସେ ବେଶ୍ ସୁଖୀ ହେଲା । ନୂଆ ଧରଣର ଉଡ଼ାଣ କି ବେଗରେ ଉଡ଼ିବାର ଆବେଗ ତା'ର ନଥିଲା । ମନର ଆବେଗ ତା'କୁ ଆଉ ଟାଣି ନେଉ ନଥିଲା; ତେଣୁ ବିଫଳତାର ବିପଦ ମଧ୍ୟ ନ ଥିଲା । ଏଇଟା ବେଶ୍ ସୁଖକର ଥିଲା; ଆଉ ଭାବିବା ପାଇଁ ବି କିଛି ନଥିଲା । ଏଥର ଅନ୍ଧାର ହେଲେ ସେ କୂଳକୁ ଫେରି ଆସୁଥିଲା ।

*ଅନ୍ଧାର !* ଛାତି ତଳୁ କିପରି ଏକ ଭୟ ବୁକୁ ଥରାଇ ଦେଲା । *ସମୁଦ୍ର ଚିଲ ଅନ୍ଧାରରେ ଉଡ଼ିବା କଥା ନୁହେଁ ।*

ଜୋନାଥନ୍ ଆଉ କିଛି ଶୁଣିବାକୁ ପ୍ରସ୍ତୁତ ନଥିଲା । ସେ ଭାବୁଥିଲା, ଏଇଟା ବେଶ୍ ସୁଖକର । ରାତିରେ ଆକାଶର ତାରା ଆଉ ଜହ୍ନର ଆଲୋକ ପାଣିରେ ଗାର ଟାଣି ନାଚି ଉଠୁଥିଲା । ସବୁ ବେଶ୍ ସ୍ଥିର, ଶାନ୍ତ, ସୁଖକର .....

ତଳକୁ ଖସି ଆସ ! ସମୁଦ୍ରପାରାମାନେ ଅନ୍ଧାରରେ ଉଡ଼ନ୍ତି ନାହିଁ । ଅନ୍ଧାରରେ ଉଡ଼ିବା ପାଇଁ ପେଚା ଆଖି ଦରକାର । ମୁଣ୍ଡରେ ସେ ଅନୁସାରେ ଭାବନା ଥିବା ଚାହି, ବାଜ ପକ୍ଷୀର ଛୋଟ ଡ଼େଣା ଥିବା ଚାହି !

ରାତିରେ..... ଶହେ ଫୁଟ ଉଚ୍ଚରୁ ଜୋନାଥନ୍ କଡ଼ ମୋଡ଼ିଲା ତଳକୁ । ତା' ମନରେ ଆବେଗ ନଥିଲା, ନୂଆଁ ବେଗ ପାଇଁ ଟାଣ ନଥିଲା; ତେଣୁ ବେଦନା ନଥିଲା, ମନରୁ ଉଚ୍ଚ ଆଶା ସବୁ କୁଆଡ଼େ ଉଡ଼ି ଯାଇଥିଲା । ଛୋଟ ଡ଼େଣା ..... *ବାଜପକ୍ଷୀର ଛୋଟ ଡ଼େଣା* !

ସେଇ ତ ତା'ର ଉତ୍ତର ! ମୁଁ କିପରି ଏକ ବୋକା ବନି ଯାଇଛି ! ମୋ ଡ଼େଣା ସାନ ହେବା ଦରକାର । ତା' ତ ମୁଁ କରିପାରିବି । ଡ଼େଣାକୁ ଭାଙ୍ଗି ଲୋଚା କରି ପାରିବି ଆଉ ସେଇମିତି ଭାଙ୍ଗି ରଖି ପରଗୁଡ଼ିକର ଟିପରେ ବାଜ ପକ୍ଷୀ ପରି ଉଡ଼ି ପାରିବି ;.... *ଆଃ ଛୋଟ ଡ଼େଣା !*

କୃଷ୍ଣସାଗର ଉପରେ ସେ ଦି' ହଜାର ଫୁଟ ଉପରକୁ ଉଡ଼ିଗଲା । ସେତେବେଳେ ବିଫଳତା ଅବା ମରଣ ପ୍ରତି ତା'ର ଭୟ ନଥିଲା । ଡ଼େଣାର ଆଗ ଭାଗଟିକୁ ଦେହ ଭିତରକୁ ଭିଡ଼ି ଆଣି, କେବଳ ପଛଭାଗ ଡ଼େଣାର ଶରଭଳିଆ ଟିପଗୁଡ଼ିକୁ ଲମ୍ବେଇ ଦେଇ ଉଡ଼ିଲା ପରେ ବେଶ୍ ତେର୍ଛା ଭାବରେ ସେ ତଳକୁ ଖସିଲା ।

କାନ ପାଖରେ ପବନଟା ଏକ ଅସୁର ପରି ଗର୍ଜି ଉଠୁଥିଲା । ତା'ର ଗତିର ବେଗ ଘଣ୍ଟାକୁ ସତୁରୀରୁ ବଢ଼ି ନବେ.... ଶହେ କୋଡ଼ିଏ ମାଇଲ୍..... କି ଆହୁରି ଅଧିକ ହୋଇ ଯାଇଥିଲା । ଘଣ୍ଟାକୁ ଶହେ ଚାଳିଶ୍ ମାଇଲ୍ ବେଗରେ ତଳକୁ ଖସିଲା ବେଳେ ଆଗ ପରି ସତୁରୀ ମାଇଲ୍ ବେଗରେ ଉଡ଼ିବାର ଚାପ ମଧ୍ୟ ନଥିଲା । ସେ ସେଇମିତି ଡ଼େଣାକୁ ଭାଙ୍ଗି ରଖି ପଛଭାଗର ଟିପଗୁଡ଼ିକୁ ସହଜରେ ମୋଡ଼ି ସରଳ ଭାବେ ଲମ୍ଫ ଦେଲା । ମୁଣ୍ଡ ଉପରେ ଉଜଳ ଜହ୍ନ । ତଳେ ଲହରୀ ଭିତରେ ପେଣ୍ଡୁ ପରି ଝଟକୁଥିବା ଜହ୍ନ ଉପରକୁ ସେ ଡ଼େଇଁ ପଡ଼ିଲା ।

ପବନର ଚାପରୁ ରକ୍ଷା ପାଇବାକୁ ସେ ଆଖି ବୁଜି ଦେଇଥିଲା । ସେ ବେଶ୍ ଉଲ୍ଲସିତ ଥିଲା । ଘଣ୍ଟାକୁ ଶହେ ଚାଳିଶ୍ ମାଇଲ୍‌ର ବେଗ ! ତା'ପୁଣି ତା ଆୟତ୍ତରେ !! ମୁଁ ଯଦି ଦି' ହଜାର ବଦଳରେ ପାଞ୍ଚ ହଜାର ଫୁଟ ଉଚ୍ଚରୁ ଲମ୍ଫ ଦିଅନ୍ତି ... !! ଆଃ, ମୁଁ କେଡ଼େ ପ୍ରଚଣ୍ଡ ବେଗରେ ..... !!!

ଅଳ୍ପ କେତେ ସମୟ ପୂର୍ବରୁ ସେ ନେଇଥିବା ଶପଥ ତା'ର ପାଶୋର ହୋଇଯାଇଥିଲା । ସତେ ଯେପରି ଅତି ବେଗରେ ଖସି ଆସିବା ସମୟର ପ୍ରବଳ ପବନରେ ସେ ଶପଥ ତା'ର ଉଡ଼ିଯାଇଥିଲା । ହେଲେ, ଶପଥ ଭୁଲି ଯାଇଥିବାରୁ ସେ ନିଜକୁ ଦୋଷ ଦେଇ ପାରୁ ନଥିଲା । ଏମିତିକା ଶପଥ ସେଇ ସମୁଦ୍ର ପାରାମାନଙ୍କ ପାଇଁ, ଯେଉଁମାନେ ସାଧାରଣ ଭାବରେ କେବଳ ବଞ୍ଚି ରହିବାକୁ ଭଲ ପାଆନ୍ତି । କିନ୍ତୁ ଯିଏ ନୂଆ କିଛି ଶିଖି କାମରେ ଉତ୍କର୍ଷତା ପାଇଥାଏ, ସେମାନଙ୍କ ପାଇଁ ଏଇପରି ଶପଥ ଦରକାର ନାହିଁ ।

ସୂର୍ଯ୍ୟ ଉଇଁଲାବେଳକୁ ଜୋନାଥନ୍ ପୁଣି ତା'ର ଅଭ୍ୟାସରେ ଲାଗି ଯାଇଥିଲା । ପାଞ୍ଚ ହଜାର ଫୁଟ ଉପରୁ ମାଛଧରା ନାଆଗୁଡ଼ିକ ସମୁଦ୍ରର ନୀଳ ପାଣିର ଚଟାଣରେ ଟୋପାଟିଏ ଲେଖାଏଁ ପରି ତା'କୁ ଦିଶୁଥିଲେ । ଏକ ପତଳା ମେଘ ପରି..... ଜଳଖିଆ ଶିକାରରେ ଲାଗିଥିବା ତା' ସାଙ୍ଗ ସମୁଦ୍ର ପାରା ଦଳଟି ତା'ଠାରୁ ବହୁତ ତଳେ ଚକ୍କର ମାରୁଥିଲେ ।

ସେ ଯେପରି ନୂଆ ଜୀବନ ପାଇଛି । ସଫଳତାର ଆନନ୍ଦରେ ତା'ଦେହରେ ଶିହରଣ..... ସେ ଥରି ଉଠୁଥିଲା । ମନର ଭୟ ଦବି ଯାଇଥିବାରୁ ସେ ଫୁଲି ଉଠୁଥିଲା ଆନନ୍ଦରେ । ତା'ପରେ ସେ ଡ଼େଣା ଦୁଇଟାକୁ ଲୋଟାଇ ଆଣିଲା । ପଛ ପଟର ଛୋଟ ପରଗୁଡ଼ିକୁ ଲମ୍ବେଇ

ଦେଇ , କଡ଼ ମୋଡ଼ିଲା – ସିଧା ସମୁଦ୍ର ଉପରକୁ । ଏଥର ସେ ପ୍ରାୟ ଚାରି ହଜାର ଫୁଟ ତଳକୁ ଖସିଲା ଭୟଙ୍କର ବେଗରେ । ପବନ ଯେପରି ଏକ ଟାଣ କାନ୍ଥ ଭଳି ତାକୁ ବାଧା ଦେଉଥିଲା । ସେଥିରେ ସେ ବେଗ ଆଉ ବଢ଼େଇ ପାରୁ ନଥିଲା । ସେତେବେଳେ ସେ ସିଧା ତଳକୁ ଖସୁଥିଲା — ଘଣ୍ଟାକୁ ଦୁଇ ଶହ ଚଉଦ ମାଇଲ୍ ବେଗରେ ! ସେ ନିଜକୁ ସମ୍ଭାଳି ନେଲା ; ସେ ଜାଣିଥିଲା ଯେ, ସେଇ ବେଗରେ ଯଦି ତା'ର ଡ଼େଣାକୁ ଖୋଲା ରଖେ, ତେବେ ତା'ର ଦେହଟା ଖଣ୍ଡ ବିଖଣ୍ଡ ହୋଇ ପଡ଼ିବ । କିନ୍ତୁ ତା' ପାଇଁ ସେଇ ବେଗ ହିଁ ଥିଲା ବଳ.... ସେଇ ବେଗ ଥିଲା ଆନନ୍ଦ..... ଆଉ ସୁନ୍ଦରତା ।

ହଜାରେ ଫୁଟ ଉଚ୍ଚରୁ ସେ ନିଜକୁ ସଙ୍କୁଚିତ କରିଦେଲା ; ଭୟଙ୍କର ପବନର ଚାପ ଭିତରେ ନିଜର ପଛ ପଟର ଛୋଟ ପରଗୁଡ଼ିକୁ ତେରଛେଇ ଲମ୍ବେଇ ଦେଲା । ତା' ପରେ ସିଧା ଖସି ଆସିଲା ପାଣି ଉପରକୁ - ନାଆ ଆଉ ତାର ସାଥି ସମୁଦ୍ରପାରା ଦଳ ଭିତର ଦେଇ ଧୂମକେତୁଟିଏ ପରି ।

ସେ ନିଜକୁ ରୋକି ପାରୁ ନଥିଲା । ଏପରି ଭୀଷଣ ବେଗରେ କିପରି କଡ଼ ମୋଡ଼ିବାକୁ ହୁଏ, ତା' ମଧ୍ୟ ସେ ଜାଣି ନ ଥିଲା ।

ଧକ୍କା ଖାଇଲେ ସିଧା ମୃତ୍ୟୁ..... ସେଥିପାଇଁ ସେ ଆଖି ବୁଜି ଦେଉଥିଲା ।

ତା' ଆର ଦିନ ସକାଳ । ଜୋନାଥନ୍‌ର ସାଥି ସମୁଦ୍ର ପାରାମାନେ ସକାଳ ବେଳାର ଦାନା ପାଇଁ ପାଣି ଉପରେ ଚକ୍କର କାଟୁଥାନ୍ତି । ଜୋନାଥନ୍ ହଠାତ୍ ସେମାନଙ୍କ ଭିତର ଦେଇ ସାଏଁକିନା ସିଧା ଉପରକୁ

ଉଠିଗଲା । ଏକାବେଳକେ ଘଣ୍ଟାକୁ ଦୁଇ ଶହ ବାର ମାଇଲ୍ ବେଗରେ । ପବନ ଯେପରି ଗର୍ଜି ଉଠୁଥିଲା । ପରଗୁଡ଼ିକ ସେଇ ପବନରେ ଥରି ଉଠୁଥିଲା । ଜୋନାଥନ୍ ଆଖି ବୁଜି ଦେଇଥିଲା । ଭାଗ୍ୟ ତା ପାଇଁ ଅନୁକୂଳ ଥିଲା । କାହାରି ସହିତ ତାହାର ଧକ୍କା ହେଲା ନାହିଁ, କେହି ମରିଲା ବି ନାହିଁ ।

ବୁକୁ ଭିତରୁ ଥଣ୍ଟଟିକୁ ପଦାକୁ କାଢ଼ିଲା ବେଳକୁ ତା'ର ବେଗ ଥିଲା ଘଣ୍ଟାକୁ ଶହେ ଷାଠିଏ ମାଇଲ୍, ସେ ସିଧା ଆକାଶକୁ ଉଠୁଥାଏ । ଯେତେବେଳେ ବେଗକୁ ସେ କୋଡ଼ିଏ ମାଇଲ୍‌କୁ ଊଣା କରି ଦେଲା ଓ ତା'ର ଡ଼େଣା ଦୁଇଟିକୁ ଶେଷରେ ପୂରା ଲମ୍ୱେଇ ଦେଲା, ସେତେବେଳେ ସେ ଚାରି ହଜାର ଫୁଟ ତଳର ପାଣି ଉପରେ ନାଆଟିଏ ଭଳି ଭାସିବାକୁ ଲାଗିଲା ।

ତା' ଭାବନାର ବିଜୟ ହେଲା । ଏକ ନାହିଁ ନ ଥିବା ବେଗ । ଏକ ସମୁଦ୍ର ପାରା *ଘଣ୍ଟାରେ ଦୁଇଶହ ଚଉଦ ମାଇଲ୍* ବେଗରେ ଗତି କରିବା କେହି କଳନା କରିପାରିନି । ତେଣୁ ସେଇ ମୁହୂର୍ତ୍ତଟି ଥିଲା ସମୁଦ୍ର ପାରା ଜାତି ପାଇଁ ଏକ ଇତିହାସ । ଏକ ନୂଆ ଯୁଗର ଆରମ୍ଭ । ଜୋନାଥନ୍ ପାଇଁ ତ ଏକ ସୁବର୍ଣ୍ଣ ଯୁଗର ଆରମ୍ଭ । ତା'ର ନିଛାଟିଆ ଅଭ୍ୟାସ ଥାନକୁ ସେ ଉଡ଼ିଯାଉଥିଲା-ଡ଼େଣା ବୁଜି ଆଠ ହଜାର ଫୁଟ ଉଚ୍ଚରୁ ଲମ୍ଫ ଦେଉଥିଲା-କଡ଼ ମୋଡ଼ିବା ବି ଶିଖି ଯାଉଥିଲା ।

ସେ ଜାଣିପାରିଲା : ଡ଼େଣା ପଛ ଛୋଟ ପର ଭିତରୁ ଗୋଟିଏକୁ ଏକ ଇଞ୍ଚର ଚଉଠେ ମାତ୍ର କଡ଼କୁ ଘୂରେଇ ଦେଲେ ହେଲା । ଅତି ବେଗରେ ଗତି କରୁଥିଲାବେଳେ ସେତିକିରେ ଉଡ଼ିବା ସହଜ ହୋଇଉଠେ । ମାତ୍ର ଗୋଟିକରୁ ଅଧିକ ପରକୁ ମୋଡ଼ ଦେଲେ, ସେଇ

ବେଗରେ ସାରା ଦେହଟି ବନ୍ଧୁକରୁ ବାହାରିଥିବା ଗୁଳି ପରି ଚକ୍କର ଖାଇ ଘୂରିଯାଏ । ଏଇ ମାଟି ଉପରେ ଜୋନାଥନ୍ ଥିଲା ପହିଲି ସମୁଦ୍ର ପାରା; ଉଡ଼ାଣ ବିଜ୍ଞାନର ଆବିଷ୍କାରକ !!

ସେଦିନ ସେ ଆଉ କାହା ସାଥିରେ ଗପସପ କରିବାରେ ସମୟ ଦେଇନି । ସେ ଉଡ଼ି ବୁଲି ନୂଆ ନୂଆ ଜାଣିପାରିଥିବା କୌଶଳଗୁଡ଼ିକର ପରଖ କରୁଥିଲା ; କିପରି ମୋଡ଼ କାଟିବା ଦରକାର, କିପରି ନଟୁ ପରି ଘୂରିଯିବା, କିପରି ଲମ୍ଫ ଦିଆଯାଏ, କିପରି ଚକ୍କର କାଟିବା .... ।

ସେଦିନ ସେ ତା'ର ସାଥିମାନଙ୍କୁ ଭେଟିଲା ବେଳକୁ ବେଶ୍ ରାତି ହୋଇ ଯାଇଥିଲା । ସେ ଖୁବ୍ ହାଲିଆ ହୋଇ ଯାଇଥିଲା; ଘୁମେଇ ପଡୁଥିଲା, ତଥାପି ସେ ଖୁସିରେ ଏକ ଡ଼ିଆଁ ମାରି ଉଠିଗଲା । ଚକ୍କର ମାରି ଲମ୍ଫ ଦେଲା ତଳକୁ ; କିନ୍ତୁ ମାଟିକୁ ଛୁଇଁବା ଆଗରୁ ପୁଣି ହଠାତ୍ ନିଜକୁ ଘୂରେଇ ନେଇ ଉପରକୁ ଉଠିଗଲା । ସେ ଭାବୁଥିଲା : ସାଥି ପାରାମାନେ ତା'ର ଉଡ଼ାଣର ନୂଆ ନୂଆ କୌଶଳ ବିଷୟ ଶୁଣିଲେ ଖୁସିରେ ଉଲୁସି ଉଠିବେ । ବଞ୍ଚିବାରେ କେତେ ସୁଆଦ, କେତେ ଆନନ୍ଦ ଅଛି ! ଘୁଷୁରିଲା ପରି ଧୀରେ ଉଡ଼ିଯାଇ ମାଛଧରା ନାଆରୁ ମାଛଟିଏ ଧରି କୂଳକୁ ଫେରି ଆସିବାରେ କଅଣ ଅଛି ?

ଜୀବନର ଏକ ଗଭୀର ମାନେ ଅଛି । ଆମେ ନିଜକୁ ଅଜ୍ଞାନରୁ ମୁକ୍ତ କରିବାକୁ ପଡ଼ିବ । ତେବେ ଯାଇ ଆମେ ଅନ୍ୟ ସବୁ ଜୀବମାନଙ୍କ ଠାରୁ ବଡ଼ ହୋଇପାରିବା, ବୁଦ୍ଧିଆ ହୋଇପାରିବା । ଆମେ କାମର କୌଶଳ ଶିଖିବା ଲୋଡ଼ା । ତେବେ ଯାଇ ଆମେ ହେବା *ସ୍ୱାଧୀନ !* *ସେତେବେଳେ ହିଁ ଅସଲି ଉଡ଼ାଣ ଶିଖିପାରିବା* ।

ଦିନ ଗଡ଼ି ଚାଲିଲା । ମନର ସପନଗୁଡ଼ିକୁ ସତକୁ ସତ କାମରେ ସେ ଦେଖାଇଦେଲା । ଏମିତି ଚାଲିଲା ବରଷ ପରେ ବରଷ ।

ଜୋନାଥନ୍ କୂଳକୁ ଓହ୍ଲାଇ ଆସିଲା ବେଳକୁ ସାଥି ସମୁଦ୍ରପାରାମାନେ ଦଳ ଦଳ ହୋଇ ତା'କୁ ଘେରେଇ ଗଲେ । ସତେ ଯେମିତି ସେମାନେ ତା'କୁ ଜଗି ବସିଥିଲେ ।

"ଜୋନାଥନ୍ ଲିଭିଂଷ୍ଟୋନ୍ ସମୁଦ୍ର ପାରା..... ମଝିରେ ଠିଆ ହୁଅ" । ବଡ଼ ମେଳା ମଉଛବରେ କହିଲା ପରି କଠୋର ଭାବରେ ମୁଖିଆ ପାଟି କରି କହିଲେ । ମଝିରେ ଠିଆ ହେବାଟା ଏକ ବଡ଼ ସମ୍ମାନ, ନ ହେଲେ ଏକ ବଡ଼ ଅପମାନର କଥା । ତାଙ୍କ ଦଳର ଆଗୁଆ ସମୁଦ୍ର ପାରାମାନେ ସମ୍ମାନ ପାଇ ଏମିତି ମଝିରେ ଠିଆ ହୋଇଛନ୍ତି । ସେ ସକାଳର ଜଳଖିଆ ଉଡ଼ାଣ କଥା ଭାବିଲା । ସେମାନେ ତାର ନୂଆ ଢ଼ାଞ୍ଚାର ଉଡ଼ାଣ ଦେଖିଛନ୍ତି । କିନ୍ତୁ.... ମୁଁ ତ ସମ୍ମାନ ଚାହୁଁନାହିଁ । ନେତା ହେବାକୁ ମୋର ତ ମନ ନାହିଁ । ମୁଁ ଖାଲି ଚାହେଁ ଖୋଲା ହୋଇ ରହିଥିବା ଦୂର ଦିଗ୍‌ବଳୟ ସଭିଏଁ ଦେଖନ୍ତୁ – ଯାହା ମୁଁ ଦେଖିଛି । ମୋ ପରି ସଭିଏଁ ସେ ଆନନ୍ଦରେ ଭାଗ ନିଅନ୍ତୁ । ସେ ଆଗକୁ ଚାଲିଲା ।

"ଜୋନାଥନ୍ ଲିଭିଂଷ୍ଟୋନ୍ ସମୁଦ୍ର ପାରା !" ମୁଖିଆ କହିଲେ "ତୁମ ସାଥିମାନେ ଦେଖିଲା ପରି ଅପମାନ ପାଇବାକୁ ତୁମେ ମଝିରେ ଠିଆ ହୁଅ ।"

କାଠଫାଳିଆରେ ବାଡ଼ିଆ ଖାଇଲା ଭଳି ତାକୁ ଲାଗିଲା । ତା'ର ଆଣ୍ଠୁ ଦୁଇଟା ଯେମିତି ହୁଗୁଳି ଗଲା । ଡ଼େଣାର ପରଗୁଡ଼ିକ ସଙ୍କୁଚିତ ହୋଇଗଲା । କାନ ମୁଣ୍ଡ ଭାଁ ଭାଁ କଲା । ଅପମାନ ପାଇଁ ମଝିକୁ ?

ଅସମ୍ଭବ ! ସକାଳର ଉଡ଼ାଣ କୌଶଳ !! ସେମାନେ ବୁଝି ପାରିବେ ନାହିଁ । ସେମାନେ ଭୁଲ ବୁଝିଛନ୍ତି, ସେମାନେ ଭୁଲ ।

" ...ତାଙ୍କର ଅଦମ୍ୟ ଦାୟିତ୍ୱହୀନତା " ସେଇ ଗମ୍ଭୀର ଗଳା କହି ଉଠିଲା, "ଏଇ ସମୁଦ୍ରପାରା ସମାଜର ସମ୍ମାନ ଓ ପରମ୍ପରାକୁ ଭଙ୍ଗ କରିଛି .....। " ଅପମାନ ଦେବାକୁ ସଭା ମଝିକୁ ଡ଼ାକି ଆଣିବାର ମାନେ ହେଉଛି, ସମାଜରୁ ବାସନ୍ଦ କରିବା ; ଦୂର ପାହାଡ଼କୁ ନିର୍ବାସିତ କରିବା ।

" ..... ତୁମେ ଜୋନାଥନ୍ ଲିଭିଂଷ୍ଟୋନ୍ ଦିନେ ବୁଝିବ , ଦାୟିତ୍ୱହୀନତା କେବେ ଭଲ ଫଳ ଦିଏ ନାହିଁ । ଜୀବନ ଅଜଣା ଏବଂ ଏହାକୁ ଜାଣିବାର କିଛି ଉପାୟ ନାହିଁ । ଆମକୁ ଏଇ ଜଗତକୁ ଆସିବାକୁ ଦିଆଯାଇଛି, ଖାଇବାକୁ ଏବଂ ଯେତେ ଦିନ ପାରିବା ବଞ୍ଚି ରହିବାକୁ । "

ଗୋଟିଏ ସମୁଦ୍ର ପାରା ତାଙ୍କ ଜାତିର ଏ ସଭାରେ କିଛି ଜବାବ ଦିଏ ନାହିଁ । କିନ୍ତୁ ଜୋନାଥନ୍‌ର ପାଟି ଫିଟିଗଲା - " ଦାୟିତ୍ୱହୀନତା ? ମୋର ସାଥିମାନେ ! " ସେ ବଡ଼ ପାଟିରେ କହିବାକୁ ଲାଗିଲା.....

" ଯିଏ ଜୀବନର ଅର୍ଥ ବୁଝିପାରେ ଏବଂ ଜୀବନରେ ଏକ ମହତ୍ତର ଉଦ୍ଦେଶ୍ୟ ରଖି ବଞ୍ଚିବାକୁ ଇଚ୍ଛା କରି ଆଗେଇ ଯାଏ, ସେ ଦାୟିତ୍ୱହୀନ ? ହଜାରେ ବର୍ଷ ହେଲା ଆମେ ଖାଲି ମାଛଟିଏ ଲେଖାଏଁ ପାଇଁ ଲାଗିପଡ଼ିଛୁ । ମାତ୍ର ଏବେ, ବଞ୍ଚିବାର ଏକ ମାନେ ଅଛି... ଶିଖିବାର ଅଛି । ନୂଆ କଥା ବାହାର କରିବାର ଅଛି । ସ୍ୱାଧୀନ ହେବାର ଅଛି । ମୋତେ ଥରଟିଏ ଖାଲି ସୁଯୋଗ ଦିଅ, ମୁଁ କ'ଣ ପାଇଛି, ଜାଣି ପାରିଛି, ଦେଖେଇ ଦେବି ...... । "

ସମୁଦ୍ର ପାରା ସମାଜଟା ଯେପରି ପଥର ପାଲଟି ଯାଇଥିଲା । " ସମାଜର ଭାଇଚାରା ହଜିଗଲା " ସଭିଏଁ ଏକାଠି କହି ଉଠିଲେ । ସବୁ ସମୁଦ୍ର ପାରା ତା'କଥାକୁ କାନ ବୁଜିଦେଲେ । ପିଠି କରି ଆଢ଼େଇ ହୋଇଗଲେ ।

ଜୋନାଥନ୍ ତେଣିକି ଏକୁଟିଆ ରହିଲା । କିନ୍ତୁ ଦୂର ପାହାଡ଼ଠୁଁ ଆହୁରି ଅନେକ ଦୂରକୁ ଉଡ଼ି ଯିବାର ନୂଆ ବାଟ ଖୋଜିଲା । ସେ ଭାରି ଦୁଃଖିତ ହେଲା । ଏକୁଟିଆ ରହିବାକୁ ପଡ଼ିଲା ବୋଲି ନୁହେଁ, କିନ୍ତୁ ଉଡ଼ାଣର ମଜା ଜାଣିବାକୁ ସବୁ ସମୁଦ୍ରପାରା ମନା କରିଦେବାରୁ । ନିଜେ ଚାଖିଥିବା ମଜା, ସମସ୍ତଙ୍କୁ ସେ ଚଖେଇ ଦେଇଥାନ୍ତା । କିନ୍ତୁ ଦେଖିବାକୁ ମନା କରି, ସଭିଏଁ ଆଖି ବୁଜି ଦେଲେ !!

ସେ ନିତି ନିତି କିଛି ଅଧିକ ଶିଖିଲା । ସେ ଜାଣିଲା ଯେ, ଅନ୍ଧାଧୁନିଆ ଅତି ବେଗରେ ଉଡ଼ିବାରୁ ସେ ନୂଆ ନୂଆ ସୁଆଦିଆ ମାଛ ଖାଇବାକୁ ପାଉଛି । ଏ ଜାତିଆ ମାଛ ସମୁଦ୍ରର ଦଶ ଫୁଟ ଗହୀରରେ ଥାଆନ୍ତି । ସେ ମାଛଧରା ନାଆରୁ ମାଛ ଓ ପଚା ରୁଟିକୁ ଆଉ ମନ ଦେଉ ନଥିଲା । ଉଡ଼ାଣ ଭିତରେ ପବନରେ ଶୋଇବା ମଧ୍ୟ ସେ ଶିଖିଗଲା । ସୂର୍ଯ୍ୟ ବୁଡ଼ିବା ଠାରୁ ଉଇଁବା ଭିତରେ, ସେ କୂଳ ଆଡୁ ବହି ଯାଉଥିବା ପବନରେ ଶହେ ମାଇଲ ଉଡ଼ି ବୁଲିଲା ।

ମନ ଭିତରର ସେଇ ଆବେଗ ନେଇ ସେ ରାତିର ସଫା ଆଲୁଅ ଓ କୁହୁଡ଼ିଆ ଅନ୍ଧାରରେ ଉଡ଼ି ଶିଖିଲା । ସେଇ ସମୟରେ ଆଉ ସବୁ ସମୁଦ୍ର ପାରା କୂଳରେ ଠିଆ ହୋଇଥାଆନ୍ତି । ସେମାନେ କେବଳ କୁହୁଡ଼ି

ବା ବର୍ଷା ଛଡ଼ା ଆଉ କିଛି ଜାଣୁ ନଥିଲେ । ସେ କୂଳରୁ ଭୂମି ଭିତରକୁ ବହୁଥିବା ଅତି ବେଗ ପବନରେ ଦୂର ଜାଗାକୁ ଉଡ଼ିଯାଇ ସେଠାର ସୁଆଦିଆ ପୋକ-ଜୋକ ଭୋଜନ କରିବା ମଧ୍ୟ ଶିଖିଲା । ଦିନେ ସେ ତା'ର ସମୁଦ୍ରପାରା ସାଥିମାନଙ୍କ ପାଇଁ ଯାହା ସବୁ ଆଶା କରୁଥିଲା, ଏବେ ସେ ଏକୁଟିଆ ସବୁ ଶିଖି ପାରିଲା ।

ସେ ବେଶ୍ ଭଲ ଭାବେ ଉଡ଼ିବା ଶିଖିଲା - ସେଥିପାଇଁ ଯାହା ବାଧା ଆସିଲେ ମଧ୍ୟ, ସେ ଦୁଃଖ କରୁ ନଥିଲା । ସେ ବୁଝି ପାରିଲା; ସମୁଦ୍ର ପାରାମାନେ ଅଳପ ଦିନ ବଞ୍ଚି ରହିବାର କାରଣ ; ସେଗୁଡ଼ିକ ହେଲା **ଅଳସ, ଭୟ ଆଉ ରାଗ** । ଏଗୁଡ଼ିକ ଦୂର କରି ଦେଇଥିବାରୁ ସେ ସୁଖକର ଭାବେ ଅଧିକ ଦିନ ବଞ୍ଚି ରହିପାରିଛି ।

ସେମାନେ ସେଦିନ ସଞ୍ଜବେଳେ ଆସିଲେ । ଜୋନାଥନ୍ ସେତେବେଳେ ତାର ଆଦରର ଆକାଶ ଭିତରେ ବେଶ୍ ଶାନ୍ତିରେ ଏକୁଟିଆ ଉଡୁଥିଲା । ରାତିର ଆକାଶରେ ତା'ଡ଼େଣା ପାଖେ ପାଖେ ସେ ଦୁଇ ଜଣ ଦେଖାଦେଲେ । ତାରା ଆଲୁଅର ସେ ଦୁହେଁ ସଫା ଦିଶୁଥିଲେ ।

ଏହା ତାକୁ ବେଶ୍ ଭଦ୍ର ଆଉ ମେଳାପି ମନେ ହେଲା । କିନ୍ତୁ ସବୁଠାରୁ ମଉଜିଆ ଥିଲା, ସେ ଦୁହିଁଙ୍କର ଉଡ଼ିବାର କୌଶଳ । ଡ଼େଣା ପଛ ଛୋଟ ପରଗୁଡ଼ିକର ଅଗ ମୋଡ଼ି ସେମାନେ ତା'ଠାରୁ ଠିକ୍ ଏକ ଇଞ୍ଚ ଦୂରରେ ରହି ଉଡୁଥିଲେ ।

ପଦେ ହେଲେ କଥା ନକହି ଜୋନାଥନ୍ ସେମାନଙ୍କୁ ପରଖ କଲା । ଏ ପରଖରେ ଆଉ କେଉଁ ସମୁଦ୍ର ପାରା କେବେ ସଫଳ ହୋଇ ନଥିଲେ । ଜୋନାଥନ୍ ତା'ର ଡ଼େଣା ଦୁଇଟିକୁ ମୋଡ଼ିମାଡ଼ି ସଙ୍କୁଚିତ କରିଦେଲା । ଘଣ୍ଟାକୁ ମା଼ତ୍ର ମାଇଲିଏ ବେଗରେ ୟଡ଼ି ବୁଲିଲା । ସେଇ ଦୁଇଟି ତୋଫା ସମୁଦ୍ର ପାରା ବେଶ୍ ସହଜରେ ତା ସହିତ ସମାନ ଭାବରେ ଉଡ଼ିବାକୁ ଲାଗିଲେ । ଏମିତି ଅତି ଧୀର ଉଡ଼ାଣର କୌଶଳ ସେ ଦୁହିଁଙ୍କୁ ଜଣାଥିଲା ।

ସେ ତା'ର ଡ଼େଣାକୁ ଭାଙ୍ଗି ନିଜକୁ ଘୂରେଇ ନେଇ ଘଣ୍ଟାକୁ ଶହେ ନବେ ମାଇଲ୍ ବେଗରେ ତଳକୁ ଲମ୍ଫ ଦେଲା । ସେ ଦୁହେଁ ମଧ୍ୟ ଠିକ୍ ସେହିପରି କୌଶଳରେ ତଳକୁ ଖସିଲେ ।

ଶେଷରେ ସେ ସେହି ବେଗକୁ ବଦଳାଇ ସିଧା ଉପରକୁ ଉଠିଲା- ବେଶ୍ ଏକ ତେରଛା ବାଟରେ, ଧୀରେ ଗଡ଼ିଗଡ଼ିକା ସେ ଦୁହେଁ ମଧ୍ୟ ମୁରୁକି ମୁରୁକି ହସି ସେହିପରି ଉଡ଼ି ଉଡ଼ି ସାଥିରେ ଆସିଲେ । ସେ ଗତିକୁ ସରଳ କରି ସମତଳରେ ଉଡ଼ିବା ଆରମ୍ଭ କଲା ।

କିଛି ସମୟ ଚୁପ୍ ରହିବା ପରେ କହିଲା, " ଖୁବ୍ ଭଲ । ତୁମେ ଦୁହେଁ କିଏ ? "

" ଆମେ ତୁମ ଦଳର, ଜୋନାଥନ୍ । ତୁମର ଭାଇ । " ପଦଗୁଡ଼ିକ ଟାଣ ଆଉ ଧୀର ଥିଲା, " ଆମେ ତୁମକୁ ଆହୁରି ଉଚ୍ଚକୁ-ଘରକୁ ନେବାକୁ ଆସିଛୁ । "

" ମୋର ଘର ତ ନାହିଁ, ଦଳ ମଧ୍ୟ ନାହିଁ । ମୁଁ ଜାତିଛଡ଼ା । ଆଉ ଆମେ ଏବେ ଅତି ବେଗରେ ବହୁଥିବା ପାହାଡ଼ିଆ ପବନରେ ସବୁଠାରୁ ଅଧିକ ବେଗରେ ଉଡୁଅଛେ । ଆଉ କେତେ ଶହ ଫୁଟ ପରେ ମୁଁ ମୋର ଏଇ ପୁରୁଣା ଦେହଟିକୁ ଆଉ ଅଧିକ ଉଚ୍ଚକୁ ଉଠେଇ ପାରିବିନି । "

" ତୁମେ କିନ୍ତୁ ପାରିବ, ଜୋନାଥନ୍ ! କାରଣ ତୁମେ ଶିଖି ପାରିଛ । ଗୋଟିଏ ପର୍ଯ୍ୟାୟ ସିନା ସରିଗଲା । ଏଇଠୁ ଆଉ ଏକ ପର୍ଯ୍ୟାୟ ଆରମ୍ଭ ହେବାର ସମୟ ଏବେ ଆସିଯାଇଛି । "

ଜୀବନ ସାରା ଏଇ ଚେତନା ତା'କୁ ଆଗେଇ ନେଇ ସଫଳ କରିଛି । ତେଣୁ ସେଇ ସମୁଦ୍ର ପାରାଙ୍କ କଥା ତା'କୁ ଉତ୍ସାହିତ କଲା । ସେହିକ୍ଷଣି ସେ ପୁଣି ଚେଇଁ ଉଠିଲା । ସେମାନେ ଠିକ୍ କହୁଛନ୍ତି । ସେ ଉଚ୍ଚରୁ ଆହୁରି ଉଚ୍ଚକୁ ଉଡ଼ିପାରିବ । ଘରକୁ ଫେରିବାକୁ ଏଇଟା ଠିକ୍ ସମୟ । ଆକାଶଟା ଉପରେ ସେ ଶେଷଥର ପାଇଁ ଆଖି ବୁଲେଇ ଆଣିଲା । ସେଇ ରୂପେଲି ପରିବେଶରେ ସେ ବହୁତ କିଛି ଶିଖିଛି ।

ଶେଷରେ ସେ କହିଲା, " ମୁଁ ପ୍ରସ୍ତୁତ " ଏବଂ ଜୋନାଥନ୍ ସମୁଦ୍ର ପାରା ଉପରକୁ ଉଠିଲା । ସାଥିରେ ସେଇ ତାରା ଭଳି ଉଜ୍ଜ୍ୱଳ ଦିଶୁଥିବା ସମୁଦ୍ରପାରା ଦୁଇଟି । ରାତିର ଅନ୍ଧାର ଭିତରେ ସେମାନଙ୍କୁ ଆଉ ଦେଖି ହେଲା ନାହିଁ ।

**ଓଃ**, ତା ହେଲେ ଏଇଟା ହେଉଛି ସ୍ୱର୍ଗ । ସେ ଭାବିଲା ଏବଂ ମନକୁ ମନ ଟିକିଏ ହସିଲା । ସରଗରେ ପଶୁ ପଶୁ ସ୍ୱର୍ଗକୁ ତନଖି ଦେଖିବାଟା ଠିକ୍ କଥା ନଥିଲା ।

ଏବେ ସେ ପୃଥିବୀରୁ ମେଘଗୁଡ଼ିକୁ ଡେ଼ଇଁ ଡେଇଁ ଆସିଥିଲା । ଆଉ ଦେଖିଲା, ତା' ସାଥି ସମୁଦ୍ରପାରା ଦୁଇଟି ଭଳି ତା' ଦେହର ରଙ୍ଗ ମଧ୍ୟ ତାରା ପରି ତୋଫା ହୋଇ ଆସିଛି । ଅବଶ୍ୟ ସେଇ ଭେଣ୍ଡିଆ ଜୋନାଥନ୍ ହିଁ ସେଇଠି ପହଞ୍ଚିଥିଲା । ତା' ଆଖି ଦୁଇଟା ତ ଆଗରୁ ସୁନେଲି ଥିଲା, ହେଲେ ଉପର ଦେହର ରଙ୍ଗ ବଦଳି ଯାଇଥିଲା ।

ତା'ର ଦେହ ସେଇ ସମୁଦ୍ର ପାରାର ଦେହ ଥିଲା । ହେଲେ, ସେ ଯେଉଁ ବେଗରେ ଉଡ଼ି ପାରୁଥିଲା, ସେପରି ତା'ଆଗରୁ କେହି ଉଡ଼ି ପାରି ନଥିଲେ । ଆଉ, ସେ ଭାବୁଥିଲା; ଏବେ ତ ଅଧା ବଳ ଲଗେଇ ମୁଁ ଦି'ଗୁଣ ବେଗରେ ଉଡ଼ି ପାରିବି । ପୃଥିବୀରେ ଯେଉଁ ଗତି ଓ କୌଶଳ ଥିଲା, ଏବେ ଏଠାରେ ତା'ଠାରୁ ଢ଼େର ଅଧିକ ସୁନ୍ଦର ଭାବେ ଅଧିକ ବେଗରେ ଉଡ଼ି ପାରିବି ।

ତା'ର ପରଗୁଡ଼ିକ ଧୋବ ଫରଫର ହୋଇ ଯାଇଥିଲା । ଡେ଼ଣା ଦୁଇଟା ମାଜିମୁଜି ଚିକ୍କଣ କରାଯାଇଥିବା ରୂପା ପରି ଚିକ୍ ଚିକ୍ କରୁଥିଲା । ସେ ଭା'ରି ଖୁସି ହୋଇ ଯାଉଥିଲା । ଆଉ ସେଇ ନୂଆ ଡେ଼ଣାକୁ ଲଗେଇ ନୂଆଁ ନୂଆଁ କୌଶଳରେ ଉଡ଼ିବାକୁ ଶିଖିବା ଆରମ୍ଭ କରିଦେଲା ।

ଘଣ୍ଟାକୁ ଅଢ଼େଇ ଶହ ମାଇଲ୍ ବେଗରେ ସେ ଉଡ଼ିପାରିଲା । ଏଇଟା ତା'ର ସବୁଠାରୁ ଅଧିକ ବେଗ ବୋଲି ସେ ଅନୁଭବ କରୁଥିଲା ।

ଘଣ୍ଟାକୁ  ଦୁଇଶହ ତେସ୍ତରି ମାଇଲ ବେଗରେ ଉଡ଼ିଲା ବେଳକୁ ସେ ଭାବିଲା ସେଇ  ବେଗ ସବୁଠାରୁ ଅଧିକ, ସେତିକି ବେଗରେ କେବଳ ଉଡ଼ି ହେବ । ତା' ମନରେ ଟିକିଏ  ହେଲେ ନିରାଶା ନ  ଥିଲା । ତା'ର ନୂଆ ଦେହ  ପାଇଁ ମଧ୍ୟ ବେଗର ସୀମା ଅଛି ବୋଲି ସେ  ଭାବୁଥିଲା । ଆଗ ଅପେକ୍ଷା ଏବେର ବେଗ ଢ଼େର ଅଧିକ । ହେଲେ ବି କଠୋର ଭାବେ ବଳ ଲଗେଇବାକୁ ପଡୁଥିଲା । ସ୍ୱର୍ଗରେ କୌଣସି ସୀମା ନ ଥିବ ବୋଲି ସେ ଭାବୁଥିଲା ।

ମେଘଟା ଫାଟିଗଲା, ଦି' ପାଖକୁ ଆଡ଼େଇ ହୋଇଗଲା । ସେଇ ଦୁଇଟି ଦେହ-ରକ୍ଷୀ ସମୁଦ୍ର ପାରା ସେଠାରୁ କହିଲେ, '' ସଫଳ ଅବତରଣ ପାଇଁ ଅଭିନନ୍ଦନ ଜୋନାଥନ୍ । '' ଏଥି ସହିତ ପତଳା ପବନ ଭିତରେ ସେମାନେ କୁଆଡ଼େ ଉଭେଇ ଗଲେ ।

ସେ ଗୋଟେ ସମୁଦ୍ର  ଉପର ଦେଇ ଉଡ଼ିଯାଉଥାଏ ।  ପାଖରେ ଏକ ଦନ୍ତୁରିତ ଉପକୂଳ  । ପାହାଡ଼ ଆଉ ତାର ଶିଖର  ଉପରେ ଅଛ କେତୋଟି ସମୁଦ୍ର ପାରା କାମରେ ଲାଗିଥିଲେ । ଉତ୍ତର ଦିଗରେ ଦିଗ୍‌ବଳୟରେ କେତୋଟି  ସମୁଦ୍ରପାରା ଉଡ଼ି ବୁଲୁଥିଲେ ।

ନୂଆ ଚେହେରା, ନୂଆ ଭାବଧାରା, ଜାଣିବାକୁ ନୂଆ ନୂଆ ଇଚ୍ଛା । କିନ୍ତୁ ଏତେ କମ୍ ସମୁଦ୍ରପାରା କାହିଁକି ? ସ୍ୱର୍ଗଟା ସମୁଦ୍ରପାରାରେ ଭରପୁର ହୋଇଥିବା  କଥା .... ମୋତେ କାହିଁକି ଏଡ଼େ ହାଲିଆ ଲାଗୁଛି !! ହଠାତ୍ ଏ କ୍ଳାନ୍ତି ?  ସ୍ୱର୍ଗରେ ତ ପାରାମାନେ ହାଲିଆ ହେବାର କଥା ନୁହେଁ  ! ଶୋଇବାର ବି ନୁହେଁ !

ଏକଥା କେଉଁଠି ସେ ଶୁଣିଥିଲା ? ମର୍ତ୍ତ୍ୟରେ ତା’ ଜୀବନର କଥାଗୁଡ଼ିକ ପାଶୋର ହୋଇ ଯାଉଛି ! ପୃଥିବୀଟା ହେଉଛି ଅସଲି ଜାଗା, ଯେଉଁଠି ସେ ବହୁତ କିଛି ଶିଖିଥିଲା । କିନ୍ତୁ ସେ ସବୁ ବିଷୟର ପୂରା କଥା କିମିତି ଝାପ୍‌ସା ହୋଇ ଯାଇଛି – ଯେମିତି ଦାନା ପାଇଁ ଲଢ଼େଇ କରିବା, ଜାତିରୁ ବାସନ୍ଦ ହେବା .... ।

କୂଳରୁ ଦୁଇଜଣ ହେବ ସମୁଦ୍ର ପାରା ତା’କୁ ଭେଟିବାକୁ ଆସିଲେ -ହେଲେ କାହାରି ପାଟିରେ ପଦେ କଥା ବି ନ ଥିଲା । ସେ ଏତିକି କେବଳ ଅନୁଭବ କଲା ଯେ, ତା’କୁ ସ୍ୱାଗତ ଜଣାହୋଇଛି । ଆଉ ସେଇଟା ହେଲା ତା ନିଜ ଘର । ସେଠାରେ ଦିନଟା ଖୁବ୍ ଅଧିକ ଲମ୍ବା ଥିଲା । ଏତେ ଅଧିକ ଥିଲା ଯେ, ସୂର୍ଯ୍ୟର ଉଦୟ ସମୟ ତା’ର ମନେ ପଡୁ ନ ଥିଲା ।

ସେ ଡେଣା ବାଢ଼େଇ ବାଲିରୁ ଇଞ୍ଚେ ଉପରେ କିଛି ସମୟ ରହି କୂଳରେ ଓହ୍ଲେଇଲା । ହାଲୁକା ଭାବରେ ଖସି ବାଲି ଆଡ଼କୁ ଚାଲିଲା । ଅନ୍ୟ ସବୁ ସମୁଦ୍ର ପାରା ମଧ୍ୟ ଘେରାଏ ଉଡ଼ି ଆସିଲେ । ହେଲେ, କେହି ହେଲେ ଡେଣାର ପରଟିଏ ମଧ୍ୟ ହଲାଉ ନ ଥିଲେ ।

ସେମାନେ ସତେ ଯେମିତି ପବନରେ ଦୋଳି ଖେଳୁଥିଲେ । ସେମାନେ ତାଙ୍କର ଉଜ୍ଜ୍ୱଳ ଡେଣାଗୁଡ଼ିକୁ ଲମ୍ବେଇ ଦେଇଥିଲେ । ତା’ପରେ କିପରି କିମିତି ଡେଣାକୁ ମୋଡ଼ି ସ୍ଥିର ହୋଇ ଆକାଶରେ ଯେଉଁଠି ସେଇଠି ରହିଗଲେ । ତା’ ପର କ୍ଷଣରେ ଭୂଇଁରେ ଠିଆ ହୋଇଗଲେ । ଏହା ଅତି ଚମତ୍କାର ଉଡ଼ିବା କୌଶଳ ଥିଲା । ମାତ୍ର ଏତିକିବେଳକୁ ଜୋନାଥନ୍ ଏତେ କ୍ଳାନ୍ତ ହୋଇ ପଡ଼ିଥିଲା ଯେ, ସେ ନିଜେ ସେ ଦିଗରେ ପରୀକ୍ଷା କରିବା ସମ୍ଭବ ନ ଥିଲା । ପଦେ ହେଲେ କଥା ନ କହି କୂଳରେ ଠିଆ ହୋଇ, ସେ ଶୋଇପଡ଼ିଥିଲା ।

ଜୋନାଥନ୍ ଦେଖିଲା, ଆଗରୁ ସେ ଯେତେ ଯାହା ଶିଖିଥିଲା, ଏଠାରେ ତା'ଠାରୁ ଢ଼େର ଅଧିକ ଉଡ଼ିବା କୌଶଳ ଶିଖିବାର ଅଛି । ମାତ୍ର ତଫାତ୍ ଅଛି । ଏଠାର ପାରାମାନେ ତା'ପରି ଭାବୁଛନ୍ତି । ଏମାନେ ପୂରା ବିଷୟଟି ଶିଖିବାକୁ ଲାଗି ପଡୁଛନ୍ତି, ଭାବୁଛନ୍ତି । ତାହା ହିଁ ତାଙ୍କର ମୁଖ୍ୟ କାମ । ସେଇଟା ହେଲା ଉଡ଼ାଣ କୌଶଳ । ଏମାନେ ଦେଖିବାକୁ ସୁନ୍ଦର, ଚମତ୍କାର । ଆଉ ସଭିଏଁ ନିତି ଘଣ୍ଟା ଘଣ୍ଟା ଧରି ଉଡ଼ାଣ ଅଭ୍ୟାସ କରନ୍ତି । ନୂଆ ନୂଆ ଉଡ଼ାଣ କୌଶଳ ଜାଣିପାରନ୍ତି ।

ଅନେକ ସମୟ ପର୍ଯ୍ୟନ୍ତ ଜୋନାଥନ୍ ତା'ର ପୁରୁଣା ଦୁନିଆ କଥା ଭୁଲି ଯାଇଥିଲା । ସେଠାରେ ତା'ଦଳର ପ୍ରାୟ ସଭିଏଁ ଖାଲି ଦାନା ପାଇଁ ଲଢ଼ନ୍ତି । ବଳକା ସମୟ ଆଖିକୁ ଜୋର୍‌ରେ ବୁଜି ବସିଯା'ନ୍ତି । ଡ଼େଣା ଦୁଇଟା କେବଳ ଖାଦ୍ୟ ଖୋଜିବାକୁ ଆଉ ସେଥିପାଇଁ ଲଢ଼ିବାକୁ । ଉଡ଼ିବା କୌଶଳ ଜାଣିବାକୁ କାହାର ମନ ନଥାଏ । ମୁହୂର୍ତ୍ତକ ପାଇଁ ସେ ସେଠାର ଆଉ ଏଠାର ବିଷୟ ମନେ ପକାଇଲା ।

ଦିନେ ସକାଳେ ତା'ର ନୂଆ ଗୁରୁଙ୍କ ସାଥିରେ ଉଡ଼ି ଉଡ଼ାଣ କୌଶଳ ଶିଖିଲା ବେଳକୁ ସେ ମନେ ପକେଇଲା । ସେତେବେଳେ ସେମାନେ କୂଳରେ ହାଲିଆ ମାରୁଥିଲେ । ସେ ଦିନ ସେ ଡ଼େଣାକୁ ଭାଙ୍ଗି, ବୁଜି ଲୋଟଣି ଉଡ଼ାଣ ଅଭ୍ୟାସ କରୁଥିଲା ।

" ବାକି ସଭିଏଁ କୁଆଡ଼େ ଗଲେ, ସୁଲିଭାନ୍ ? " ସେ ଧୀରେ ପଚାରିଲା । ଏ ଭିତରେ ଏ ନୂଆଁ ଜାଗାଟିକୁ ସେ ଆପଣାର କରିନେଇଛି । ଏହା ତାକୁ ଘର ପରି ଲାଗୁଛି । ଏଠାରେ ସଭିଏଁ ମନକୁ ମନ ନିଜ ଭିତରେ କଥା ହୁଅନ୍ତି (ଟେଲିପାଥି), ଶିଶିରି ମାରିବା କି ରଡ଼ି ଛାଡ଼ିବା ଦରକାର ପଡ଼େନି ।

“ ସେଠାରୁ ଅନ୍ୟମାନେ ଏଠାକୁ କାହିଁକି ଆସି ନାହାନ୍ତି ? କାହିଁକି ? ମୁଁ ଯେଉଁଠାରୁ ଆସିଲି, ସେଠାରେ ତ .... ”

“ .... ସେଠାରେ ତ ହଜାର ହଜାର ସମୁଦ୍ରପାରା ଥିଲେ । ତା’ ମୁଁ ଜାଣେ । ”ସୁଲିଭାନ୍ ମୁଣ୍ଡ ଟୁଙ୍ଗାରିଲା “ ତା’ର କେବଳ ଗୋଟିଏ କାରଣ ... ମୁଁ ଜାଣେ, ଜୋନାଥନ୍ । ତୁମେ ହେଉଛ ସେପରି ଲକ୍ଷେ ପକ୍ଷୀଙ୍କ ଭିତରେ ଜଣେ । ତୁମେ ସୁନ୍ଦର । ଅଧିକାଂଶ ପକ୍ଷୀ ତ ଅତି ଧୀରେ ଆସନ୍ତି । ”

“ ଆମେ ଗୋଟିଏ ଜଗତରୁ ଅବିକଳ ଲାଗୁଥିବା ଆଉ ଏକ ଜଗତକୁ ଗଲେ । କେଉଁଠୁ ଆସିଲେ,କୁଆଡ଼େ ଯାଉଛେ, ଭୁଲିଗଲେ । ଏକମୁହାଁ ଉଡ଼ି ଆସିଲେ । ତୁମେ କ’ଣ ଜାଣିଛ କେତେ ଜନମ ସରିଲା ପରେ ତୁମେ ଏସବୁ କରି ପାରିଛ ? ଦାନା ପାଇଁ, ଦଳରେ ମୁଖିଆ ହେବାକୁ ଲଢ଼େଇ କରିବା ଛଡ଼ା ଆଉ ସବୁ ପକ୍ଷୀ କ’ଣ ଜାଣନ୍ତି ? ”

“ ଜୀବନରେ ଉଡ଼ାଣ-ଶିଖିବାର ମନ ତାଙ୍କର ନାହିଁ । ହଜାରେ ଜନମ, ଜୋନାଥନ୍ , ଦଶ..ହଜାର...ଜନମ । ଆଉ ତା’ପରେ ଶହେ ଜନମ ପରେ ଆମେ ବୁଝି ପାରୁ ଯେ, ପୂରା ବିଷୟଟି ଶିଖିଲା ଭଳି ଅଛି । ଆଉ ଶହେ ଜନମ ପରେ ଆମେ ବୁଝିପାରୁଁ ଯେ ଜୀବନର ଅସଲି ଲକ୍ଷ୍ୟ ଏଇ ପୂରା ବିଷୟଟି ଜାଣିବା ।

ଏହାପରେ ଆମର ଜାଣିଥିବା କୌଶଳ ପ୍ରକାଶ କରିବା ଦରକାର । ସେଇ ଗୋଟିଏ ନିୟମ ଆମ ପାଇଁ ଏବେ ବି ରହିଛି । ଆମେ ଏଇ ଦୁନିଆରୁ ଯାହା କିଛି ଶିଖିଲେ, ସେ ଅନୁସାରେ ଆମର ଆସନ୍ତା କାଲିର ଦୁନିଆକୁ ଯିବା । ଯଦି କିଛି ଶିଖି ପାରିବା ନାହିଁ, ତେବେ ଯେତେ

ଜନମ ହେଲେ ମଧ୍ୟ ସେଇ ପୁରୁଣା ଦୁନିଆରେ ରହିଥିବା । ଆମର ସୀମା ଓ ଦେହର ଓଜନ ସେହିପରି ରହିଥିବ । ''

ସେ ପବନକୁ ମୁହେଁଇବାକୁ ତା'ର ଡ଼େଣା ଲମ୍ୱେଇ ଦେଲା । '' ମାତ୍ର, ଜନ୍ ତୁମେ ବହୁତ କଥା ଶିଖି ଯାଇଛ । ତେଣୁ ତୁମକୁ ଏଠାରେ ପହଞ୍ଚିବାକୁ ହଜାରେ ଜନମ ଲାଗିଲା ନାହିଁ । ''

....ମୁହୂର୍ତ୍ତକ ମଧ୍ୟରେ ସେମାନେ ପବନରେ ଉଡ଼ିବାକୁ ଲାଗିଲେ । କୌଶଳ ଅଭ୍ୟାସ । ଏକ ନିର୍ଦ୍ଦିଷ୍ଟ ସମୟରେ ଠିକ୍ ଏକ ଜାଗାରେ ଡ଼େଣାକୁ ଭାଙ୍ଗି ଘୁରି ବୁଲି ଉଡ଼ିବା କୌଶଳ ବେଶ୍ କଷ୍ଟକର । ଜୋନାଥନ୍‌କୁ ଭିତର ପଟୁ ଡ଼େଣା ଭାଙ୍ଗି ଉପରୁ ତଳକୁ ଘୁରି ଉଡ଼ିବା ପାଇଁ ଭାବିବାକୁ ପଡୁଥିଲା । ଡ଼େଣାକୁ ପୁଣି ଓଲଟା ଭାଙ୍ଗି ଓଲଟା ବାଟରେ ଗୁରୁ ପକ୍ଷୀ ଭଳି ଠିକ୍ ଉଡ଼ିବା କୌଶଳ ତା'କୁ ଶିଖିବାକୁ ପଡୁଥିଲା ।

'' ପୁଣି ଥରେ ଆମେ ଚେଷ୍ଟା କରିବା '' ସୁଲିଭାନ୍ କହିଲା । '' ପୁଣି ଥରେ ଆମେ ଚେଷ୍ଟା କରିବା '' ବୋଲି ସେ ଥରକୁ ଥର କହୁଥିଲା । ଶେଷରେ ସେ କହିଲା '' ଚମତ୍କାର '' । ଏଥର ସେମାନେ ଖୋଲା ଡ଼େଣା ଉଡ଼ାଣ ଅଭ୍ୟାସ କଲେ ।

ସଞ୍ଜବେଳ । ରାତିରେ ଉଡୁ ନଥିବା ସମୁଦ୍ର ପାରାମାନେ ବାଲି ଉପରେ ମିଳିମିଶି ଠିଆ ହୋଇ ଭାବୁଥିଲେ । ଜୋନାଥନ୍ ତ ହାତ ମୁଠାରେ ଦେହର ସବୁ ବଳ ଧରିଥିଲା ପରି କାମରେ ଲାଗିଥାଏ । ସେଦିନ ସାହସ ବାନ୍ଧି ସେ ତାଙ୍କ ଦଳର ସବା ବଡ଼ ସମୁଦ୍ରପାରା ପାଖରେ ପହଞ୍ଚିଲା । ବୁଢ଼ା ପାରାଟି ଆଉ ପାରିକୁ ଯିବା ଉପରେ ।

''ସିଆଙ୍ ! ....'' ଟିକିଏ ବ୍ୟସ୍ତ ଭାବରେ ସେ କହିଲା ବୁଢ଼ା ସମୁଦ୍ର ପାରାଟି ବେଶ୍ ସଦୟ ଭାବେ ତାକୁ ଚାହିଁଲା । '' ହଁ , କହ ପୁଅ '', ସେ କହିଲା । ବୟସର ଓଜନରେ ଦୁର୍ବଳ ହୋଇ ପଡ଼ିବା ବଦଳରେ ସେ ଯେପରି ନୂଆ ବଳ ପାଇଥିଲା ! ଦଳର ଯେ କୌଣସି ପାରାକୁ ସେ ଟପି ଯାଇପାରିବ । ଆଉ ସେ ଯେତେ ସବୁ ନୂଆ କୌଶଳ ଶିଖି ପାରିଛି, ସେସବୁ ତ ଅନ୍ୟମାନେ ଏବେ କ୍ରମେ କ୍ରମେ ଜାଣୁଛନ୍ତି ।

'' ସିଆଙ୍ ! ଏଇ ଦୁନିଆଟା ଜମା ସ୍ୱର୍ଗ ନୁହେଁ ନା, କ'ଣ କହୁଛ ? ''

ଜହ୍ନ ଆଲୁଅରେ ବୁଢ଼ା ମୁରୁକି ହସା ଦେଲା । '' ତୁ ଏବେ ପୁଣି ଥରେ ଶିଖୁଛୁ , ଜୋନାଥନ୍ '' ସେ କହିଲା ।

'' ତା' ହେଲେ ଏହା ପରେ କ'ଣ ହେବ ? ଆମେ ପୁଣି କୁଆଡ଼େ ଯାଉଛେ ? କ'ଣ ସତରେ ସ୍ୱର୍ଗ ବୋଲି କିଛି ନାହିଁ ? ''

'' ନା, ଜୋନାଥନ୍ , ସେପରି କିଛି ସ୍ଥାନ ନାହିଁ । ସ୍ୱର୍ଗ ବୋଲି କୌଣସି ସ୍ଥାନ ନାହିଁ, କି କୌଣସି ସମୟ ନାହିଁ । ପୂର୍ଣତା ହିଁ ହେଉଛି ସ୍ୱର୍ଗ । '' କିଛିକ୍ଷଣ ପାଇଁ ସେ ଚୁପ୍ ରହିଲା ।

ତା'ପରେ ସେ କହିଲା, '' ତୁ ଜଣେ ଅତି ଚଞ୍ଚଳ ଉଡ଼ାଳୀ । ନୁହେଁ ? ''

'' ମୁଁ .... ମୁଁ ବେଗରେ ଉଡ଼ିବାକୁ ଭଲ ପାଏ '' ଜୋନାଥନ୍ କହିଲା । ବୁଢ଼ା ଜୋନାଥନ୍‌ର ଭାବଟିକୁ ଠଉରେଇ ନେଇଥିବାରୁ ସେ ଚମକି ପଡ଼ିଲା । ଟିକିଏ ଗର୍ବ ବି ଅନୁଭବ କଲା ।

‘‘ ଯେଉଁ ମୁହୂର୍ତ୍ତରେ ତୋ’ର ବେଗରେ ପୂର୍ଣତା ଆସିଯିବ, ସେହି ସମୟରେ ହିଁ ତୁ ସ୍ୱର୍ଗକୁ ଛୁଇଁବା ଆରମ୍ଭ କରିବୁ । ଜୋନାଥନ୍ ! ସେଇ ବେଗ ଘଣ୍ଟାକୁ ହଜାରେ କି ଲକ୍ଷେ ମାଇଲ୍ ନୁହେଁ, କି ଆଲୋକର ବେଗରେ ଉଡ଼ିବା ବି ନୁହେଁ । କାରଣ ଯେ କୌଣସି ସଂଖ୍ୟାର ତ ସୀମା ଅଛି । କିନ୍ତୁ ପୂର୍ଣତାର କୌଣସି ସୀମା ନାହିଁ । ବେଗରେ ପୂର୍ଣତା ହେଉଛି, ଚାହିଁଲା କ୍ଷଣି ସେହି ସ୍ତରରେ ପହଞ୍ଚି ପାରିବା । ବୁଝିଲୁ ପୁଅ ? ’’

କିଛି ସଙ୍କେତ ନଦେଇ ସିଆଙ୍ଗ୍ ହଠାତ୍ ଅଦୃଶ୍ୟ ହୋଇଗଲା । ମୁହୂର୍ତ୍ତକ ପରେ ପାଣି ଧାରର ପଚାଶ ଫୁଟ ଦୂରରେ ସେ ଦେଖାଦେଲା, ଆଲୋକର ଏକ ଝଲକ ପରି । ତା’ପରେ ପୁଣି ଅଦୃଶ୍ୟ ହୋଇଗଲା । ପୁଣି ଏକ ମୁହୂର୍ତ୍ତରେ ସେ ଜୋନାଥନ୍‌ର କାନ୍ଧ ପାଖରେ ଦେଖାଦେଲା ।

‘‘ ଇଏ ଗୋଟିଏ ପ୍ରକାର ମଜା । ’’ ସେ କହିଲା ।

ଜୋନାଥନ୍ ଘାବରେଇ ଗଲା । ସେ ସ୍ୱର୍ଗ ବିଷୟରେ ପଚାରିବାକୁ ଭୁଲିଗଲା । ‘‘ ତୁମେ କିପରି ଏ ସବୁ କରିପାରୁଛ ? ଏହା କିମିତି ଲାଗେ ? କେତେ ଦୂର ତୁମେ ଯାଇ ପାରିବ ? ’’

‘‘ ତୁମେ ଇଚ୍ଛା କରୁଥିବା ଯେ କୌଣସି ସ୍ଥାନକୁ ଏବଂ ଯେ କୌଣସି ସମୟକୁ ଯାଇ ପାରିବ । ’’ ସେ ବୟସ୍କ ପକ୍ଷୀଟି କହିଲା ‘‘ମୁଁ ଯାହା ସବୁ ଇଚ୍ଛା କରିଛି, ସେ ସବୁ ସ୍ଥାନକୁ ଆଉ ସମୟକୁ ଯାଇଛି ।’’ ସେ ସମୁଦ୍ରର ଆର ପାରିକୁ ଚାହିଁଲା । ‘‘ କି ଆଶ୍ଚର୍ଯ୍ୟ, ଯେଉଁ ସମୁଦ୍ର ପାରାମାନେ ଉଡ଼ିବା କାମରେ ପୂର୍ଣତା ଚାହାନ୍ତି ନାହିଁ, ସେମାନେ କୁଆଡ଼େ ଯାଆନ୍ତି ନାହିଁ । ଯେଉଁମାନେ ପୂର୍ଣତା ପାଇବାକୁ ଗତିର ବେଗ ବଢ଼ାନ୍ତି, ସେମାନେ ଯେ କୌଣସି ଜାଗାକୁ ମୁହୂର୍ତ୍ତକ ଭିତରେ ଯାଇପାରନ୍ତି ।

ଜୋନାଥନ୍ , ମନେରଖ, ସ୍ୱର୍ଗ କୌଣସି ସ୍ଥାନ କି ସମୟ ନୁହେଁ । କାରଣ ସ୍ଥାନ ଆଉ ସମୟ କେଡ଼େ ଅର୍ଥହୀନ !! ସ୍ୱର୍ଗ ହେଉଛି .... ''

'' ସେପରି ଉଡ଼ିବାକୁ ତୁମେ ମୋତେ ଶିଖେଇ ପାରିବ ? '' ଆଉ ଏକ ଅଜଣା ବିଷୟ ଜାଣିବାର ଆବେଗରେ ଜୋନାଥନ୍ ଶିହରି ଉଠିଲା ।

'' ଅବଶ୍ୟ । ତୁମେ ଯଦି ଶିଖିବାକୁ ଇଛା କର । ''

'' ମୁଁ ଚାହେଁ । କେତେବେଳେ ଆମେ ଆରମ୍ଭ କରିବା ? ''

'' ତୁମେ ଯଦି ଚାହଁ, ତେବେ ଏବେ ଆରମ୍ଭ ହେଲା । ''

'' ମୁଁ ସେପରି ଉଡ଼ିବାଟା ଶିଖିବାକୁ ଚାହେଁ । '' ଜୋନାଥନ୍ କହିଲା । ଏକ ବିଚିତ୍ର ଆଲୋକରେ ତା' ଆଖି ଉଜ୍ଜ୍ୱଳ ହୋଇଉଠିଲା ।

'' କ'ଣ କରିବାକୁ ହେବ, ମୋତେ କୁହ । ''

ସିଆଙ୍ଗ୍ ଧୀରେ କହିଲା । ସେ ଜୋନାଥନ୍‌କୁ ଅତି ଆଦରରେ ଚାହିଁଥିଲା । '' ଭାବନା ଅନୁସାରେ ଯେତେ ଇଛା ବେଗରେ, ଯେ କୌଣସି ଜାଗାକୁ ଉଡ଼ିଯିବାକୁ ହେଲେ ତୁମକୁ ଜାଣିବାକୁ ପଡ଼ିବ ଯେ, ତୁମେ ସେଠାରେ ପହଞ୍ଚିସାରିଛ । ''

ତେବେ ଏଇଟା ହେଲା କୌଶଳ, ନୂଆ ଜ୍ଞାନ । ସିଆଙ୍ଗ କହିବା ଅନୁସାରେ ଜୋନାଥନ୍‌କୁ ଏଣିକି ଦେଖିବାକୁ ହେବ - ତା' ଦେହଟା

ଗୋଟିଏ ଯନ୍ତା ପରି; କିନ୍ତୁ ସେ ତା' ଭିତରେ ଛନ୍ଦି ହେଇନି କି ବନ୍ଧା ହେଇନି । ବୟାଳିଶି ଇଞ୍ଚ ଲମ୍ବା ଡ଼େଣା ଯୋଡ଼ା ପକ୍ଷୀ ଦେହରେ ସେ ଜଣେ କଏଦୀ ନୁହେଁ । ତା'ର ଗତିର ସବୁ ଦିଗକୁ ଏକ ଛୋଟ ନକ୍ସାରେ ଟିପି ଦିଆ ଯାଇପାରେ । କିନ୍ତୁ ତା'ର ଇଚ୍ଛା ଶକ୍ତି (ତା'ର ପ୍ରକୃତି) ପୂର୍ଣ, ସେଇଟା ହିଁ ପ୍ରକୃତରେ ସେ ନିଜେ । ତା'ର ସୀମା ନାହିଁ । ତା' ଲେଖା ହୋଇ ନ ପାରିବା ସଂଖ୍ୟା । ତାହା ହେଉଛି ସେଇ ପୂର୍ଣତା ଜ୍ଞାନ । ଦେଶ, କାଳ, ପାତ୍ର ଡ଼େଇଁ ଚାହିଁବା କ୍ଷଣି, ଯେ କୌଣସି ଜାଗାରେ ପହଞ୍ଚି ପାରିବାର - ଏଇଟା ହେଲା କୌଶଳ ।

ଜୋନାଥନ୍ ମନେ ରଖିଲା । ମନକୁ ଟାଣ କରି ଦିନ ପରେ ଦିନ ସେ ସେଇ ଭାବନାରେ ବୁଡ଼ି ରହିଲା । ରାତି ପାହିବା ଆଗରୁ ଆରମ୍ଭ କରି ଅଧା ରାତି ଗଡ଼ି ଯିବା ଯାଏଁ ବି ତା' ମନ ଟଳୁ ନଥିଲା । ସବୁ ବଳ ଖଟେଇ ସେଇ ଗୋଟିଏ ଭାବନାକୁ ସେ ଧରି ରଖିଥିଲା । ସେଇ ବସିଲା ଥାନରୁ ଟିକିଏ ସୁଦ୍ଧା ଏପଟ ସେପଟ ହୋଇ ନଥିଲା ।

" ଧାରଣା, ବିଶ୍ୱାସ ଆଦି ସବୁ ଭୁଲି ଯାଅ । " ସିଆଙ୍ଗ୍ ତା'କୁ ଥରକୁ ଥର ମଝିରେ ମଝିରେ କହୁଥିଲା । " ଉଡ଼ିବା ପାଇଁ ତୁମର କୌଣସି ବିଶ୍ୱାସ ଦରକାର ନାଇଁ । ଉଡ଼ିବାର କୌଶଳ ବୁଝିବାକୁ ହୁଏ । ଏଇଟା ବି ସେମିତି । ଏବେ ପୁଣି ଥରେ ଚେଷ୍ଟା କର .... । "

ଏଇମିତି ଗଡ଼ି ଚାଲିଲା କେତେ ଦିନ । ଦିନେ ଜୋନାଥନ୍ ଆଖି ବୁଜି କୂଳରେ ଠିଆ ହୋଇଥିଲା । ତା'ର ମନ, ପ୍ରାଣ ଆଦି ସବୁ ଗୋଟିଏ ଦିଗକୁ ମୁହାଁଇଥାଏ । ସିଆଙ୍ଗ୍‌ର ଗୋଟେ କଥା ଝାଏଁ କିନା ତା' ମନକୁ ଆସିଲା, ସେ ବୁଝି ପାରିଲା," କାହିଁକି ? ସେଇଟା ତ ସତ କଥା । ମୁଁ ଏକ ପରିପୂର୍ଣ, ଅସୀମ ପାରା । "

ଅତିଶୟ ଆନନ୍ଦର ଶିହରଣରେ ସେ ଉଲ୍ଲସି ଉଠିଲା ।

" ଠିକ୍ । " କହି ଉଠିଲା ସିଆଙ୍ଗ୍ । ସ୍ୱରରେ ତା'ର ବିଜୟ ସଙ୍କେତ ।

ଜୋନାଥନ୍ ଆଖି ଖୋଲିଲା । ସେ ଏକୁଟିଆ ଠିଆ ହୋଇଥିଲା । ଆଉ ତା'ର ବୟସ୍କ ବନ୍ଧୁ ଆଉ ଏକ ସମୁଦ୍ର କୂଳରେ । କୂଳରେ ଗଛଗୁଡ଼ିକ ନଇଁ ଆସିଥିଲେ ପାଣି ଉପରକୁ । ଆଉ ହଳଦିଆ ରଙ୍ଗର ଦୁଇଟା ସୂର୍ଯ୍ୟ ଯେପରି ମୁଣ୍ଡ ଉପରେ ଢ଼ଳୁଥିଲେ ।

" ଶେଷରେ ତୁମେ 'ବିଦ୍ୟା'ଟା ପାଇଗଲ । " ସିଆଙ୍ଗ୍ କହିଲା । ହେଲେ ଆୟତ୍ତ କରିବାକୁ ଆଉ ଟିକିଏ ଅଭ୍ୟାସ ଦରକାର । "

ଜୋନାଥନ୍ ପଥର ପାଲଟି ଯାଇଥିଲା ଯେମିତି । " ଆମେ ଏବେ କେଉଁଠି ? "

ବିଚିତ୍ର ପରିବେଶ । ହେଲେ ସେଥିପ୍ରତି ଆଖି ନ ପକେଇ ବୟସ୍କ ବନ୍ଧୁ ଏ ପ୍ରଶ୍ନକୁ ଏଡ଼େଇ ଦେଲେ, " ଆମେ ଏବେ କେଉଁ ଏକ ଗ୍ରହରେ ବୋଧହୁଏ । ଏଠାରେ ଆକାଶ ଶାଗୁଆ, ଆଉ ସୂର୍ଯ୍ୟ ଦୁଇଟା । "

ଜୋନାଥନ୍ ଆନନ୍ଦରେ ପାଟି କରି ଉଠିଲା । ପୃଥିବୀ ଛାଡ଼ିବା ପରେ ଏଇ ତା'ର ପହିଲେ ପାଟି ଫିଟିଲା । " **ଏହା ସମ୍ଭବପର** । "

" ଆଚ୍ଛା, ଠିକ୍ । ଅବଶ୍ୟ ଏହା ସମ୍ଭବପର, ଜୋନ୍ ! "ସିଆଙ୍ଗ୍ କହିଲା । " ଏଇଟା ସବୁବେଳେ ସମ୍ଭବପର । ହେଲେ, କେବଳ ତୁମେ

ଯେତେବେଳେ ବୁଝିପାର - ତୁମେ କ'ଣ କରୁଛ । ଆଉ ଏବେ, ଏହା ତୁମ ଆୟତ୍ତର କଥା .... । ''

ସେମାନେ ଫେରିଲା ବେଳକୁ ସଞ୍ଜ ହୋଇ ଯାଇଥିଲା । ସେଠାରେ ବସି ରହିଥିବା ପାରାମାନେ ଜୋନାଥନ୍‌କୁ ତାଙ୍କର ସୁନେଲି ଆଖିରେ କେମିତି ଏକ ଭୟମିଶା ଭାବରେ ଚାହିଁଲେ । କାରଣ ଗୋଟିଏ ସ୍ଥାନରେ ଅନେକ ଦିନ ବସି ରହିବା ପରେ ସେ ହଠାତ୍ ଅଦେଖା ହୋଇ ଯାଇଥିଲା ।

ସେମାନଙ୍କର ଅଭିନନ୍ଦନ ପାଇଁ ସେ ମିନିଟିଏ ଠିଆ ହେଲା । '' ମୁଁ ଏଠାକୁ ନୂଆ ଆସିଛି । ମୁଁ ତ ଆରମ୍ଭ ମାତ୍ର କରୁଛି । ଆଉ, ଆପଣମାନଙ୍କ ଠାରୁ ମୋର ଅନେକ କିଛି ଶିଖିବାକୁ ଅଛି ! ''

'' ସେ କଥା ମୋତେ ଆଶ୍ଚର୍ଯ୍ୟ ଲାଗୁଛି, ଜୋନ୍ ! '' ସୁଲିଭାନ୍ କହିଲା । '' ଦଶ ହଜାର ବର୍ଷ ଭିତରେ ମୁଁ ବହୁତ ସମୁଦ୍ର ପାରା ଦେଖିଛି । ହେଲେ, ତୁମେ ହେଉଛ ଜଣେ ମାତ୍ର ସମୁଦ୍ର ପାରା, ଯାହାର କିଛି ଶିଖିବାରେ ଭୟ ନାହିଁ । '' ପାରା ଗୋଠଟି ନୀରବ ହୋଇଗଲା । ଜୋନାଥନ୍ କିପରି ଏକ ଅଶ୍ୱସ୍ତି ଅନୁଭବ କଲା ।

'' ସମୟ ଅନୁସାରେ କାମ କରି ଶିଖିବାଟା ଆମେ ଏବେ ଆରମ୍ଭ କରିପାରିବା । ଅବଶ୍ୟ ..... ତୁମେ ଇଚ୍ଛା କଲେ । '' ସିଆଙ୍ଗ୍ କହିଲା । '' ତୁମେ ପୂରା ଅତୀତ ଓ ଭବିଷ୍ୟତକୁ ଉଡ଼ି ଯାଇ ପାରିବ । ତା'ପରେ ସବୁଠାରୁ କଷ୍ଟ ପାଠ – କିନ୍ତୁ ଏହା ସବୁଠାରୁ ଶକ୍ତିଶାଳୀ ଏବଂ ସବୁଠାରୁ ମଉଜିଆ । ତୁମେ ଶିଖି ପାରିବ, ଉପରକୁ ଉପରରୁ ଉଡ଼ିଯିବା । ଏଥି ସହ ତୁମେ ବୁଝିପାରିବ ଦୟା ଆଉ ପ୍ରେମର ଅସଲି ଅର୍ଥ । ''

ଏମିତି ମାସେ ଖଣ୍ଡେ ସମୟ ବିତିଗଲା । ତା'କୁ ଏହା ମାସେ ପରି ଲାଗିଲା । ଆଉ ଜୋନାଥନ୍ ବି ଅତି ଅଧିକ ବେଗରେ ଶିଖି ଚାଲିଲା । ସାଧାରଣ ବିଷୟ ମଧ୍ୟ ସେ ଚଞ୍ଚଳ ଶିଖି ପାରୁଥିଲା, ତା'ର ସାଧାରଣ ଅନୁଭୂତିରୁ - ଆଉ ଏବେ ତ ସିଏ ସ୍ୱୟଂ ବୟସ୍କ ବନ୍ଧୁଙ୍କର ପଟ୍ଟ ଶିଷ୍ୟ । ପକ୍ଷୀ ରୂପରେ ଏକ କମ୍ପ୍ୟୁଟର ପରି ସେ ନୂଆ ନୂଆ କୌଶଳଗୁଡ଼ିକ ଅତି ଚଞ୍ଚଳ ଶିଖି ଚାଲିଲା ।

ହଠାତ୍ ଦିନେ ସିଆଙ୍ଗ୍ ଉଭେଇଗଲା । ଏତେ ଦିନ ଧରି ସେ ଧୀରସ୍ଥିର ଭାବରେ କଥା କହି ଆସୁଥିଲା । ଶିଖିବା ଅଭ୍ୟାସକୁ ସବୁ ଦିନ ପାଇଁ ଜାରି ରଖିବା ସେ ବୁଝାଇ ଚାଲିଥିଲା । ଜୀବନରେ ଅଦେଖା ଓ ଅବୁଝା ନୀତି ନିୟମଗୁଡ଼ିକୁ ଜାଣିବା ପାଇଁ ଲାଗି ପଡ଼ିବାକୁ ସେମାନଙ୍କୁ ସେ ଉସୁକାଇ ଚାଲିଥିଲା । ସେ କହିଥିଲା ପରି ତା'ର (ଜୋନାଥନ୍ ର) ପରଗୁଡ଼ିକ ଅଧିକରୁ ଅଧିକ ଉଜ୍ଜ୍ୱଳ ହୋଇ ଉଠିଲା । ଶେଷରେ ଏତେ ଉଜ୍ଜ୍ୱଳ ହୋଇଗଲା ଯେ, ଅନ୍ୟ ପାରାମାନେ ତା'କୁ ଚାହିଁ ପାରିଲେ ନାହିଁ ।

" ଜୋନାଥନ୍ ! " ସେ କହିଥିଲା । ଆଉ ଏଇ କେତେ ପଦ ତା'ର ଶେଷ କଥା ଥିଲା । " ପ୍ରେମର ସହ କାମ କରିଯାଅ । " ଯେତେବେଳେ ସେମାନେ ପୁଣି ଭେଟିବା କଥା, ସେତେବେଳକୁ ସିଆଙ୍ଗ୍ ଚାଲି ଯାଇଥିଲା ।

ସମୟ ଗଡ଼ି ଚାଲିଲା । ଜୋନାଥନ୍ ଦେଖିଲା, ସେ ଥରକୁଥର ସେଇ ପୃଥିବୀ କଥା ଭାବୁଛି, ଯେଉଁଠୁ ସେ ଆସିଛି । ଏଠାରେ ଜାଣିଥିବା ବିଷୟର ଦଶ ଭାଗରୁ କାହିଁକି ଶହେ ଭାଗରୁ ଭାଗେ ହେଲେ ଯଦି ସେ ସେତେବେଳେ ଜାଣିଥା'ନ୍ତା, ତା'ହେଲେ କେତେ ସୁନ୍ଦର ହୋଇ

ପାରିଥାନ୍ତା, ସେଠାକାର ଜୀବନ !! ସେଇ ବାଲି ଉପରେ ଠିଆ ହୋଇ ସେ ଭାବୁଥିଲା ଓ ଚକିତ ହେଉଥିଲା , ତା'ପରି କେଉଁ ସମୁଦ୍ରପାରା ଜାତିରୁ ତଡ଼ା ଖାଇ ତା'କୁ ଟପି ଯିବାକୁ ଲାଗି ପଡ଼ିଛି କି ? ସମୁଦ୍ରରେ ବୁଲୁଥିବା ନାଆରୁ ରୋଟି ଖଣ୍ଡ ଭଳି ଦାନା ଝାମ୍ପିବା ଛଡ଼ା ଜୀବନର ଅର୍ଥ ଆଉ ଉଡ଼ିବା କୌଶଳ ଜାଣିବାକୁ କାହିଁ କିଏ ଆଉ ଲାଗି ପଡ଼ିଛି କି ?

ହୁଏ ତ ଥାଇପାରେ । ଦଳ ଆଗରେ ମନର ସତ କଥା କହି ଦଳରୁ ତଡ଼ା ଖାଇ ଥାଇପାରେ । ଜୋନାଥନ୍ ଏଇ 'ଦୟା' ବିଷୟ ନେଇ ଯେତିକି କାମ କରି ଚାଲିଲା, ସେତିକି ଅଧିକ ଭାବେ 'ପ୍ରେମ'ର ପ୍ରକୃତି ଜାଣି ପାରିଲା । ଆଉ ପୃଥିବୀକୁ ଫେରି ଯିବାକୁ ତା'ର ମନ ହେଲା । କାରଣ ସେଇ ଅତୀତରେ ଏକୁଟିଆ ହୋଇ ତା'କୁ ବଞ୍ଚିବାକୁ ପଡୁଥିଲେ ବି, ସେ ଯେପରି ଜନମ ହୋଇଥିଲା ଗୁରୁ ହେବାକୁ, ଶିଖେଇବାକୁ । ସିଏ ତ ସବୁବେଳେ ଚାହୁଁଥିଲା, ସେ ନିଜେ ଲାଗିପଡ଼ି ଶିଖିଥିବା ପ୍ରେମ ସମସ୍ତଙ୍କୁ ଦେଖେଇ ଶିଖେଇ ଦେବାକୁ । ସେ କେବଳ ଗୋଟିଏ ସମୁଦ୍ରପାରା ଦେଖିଥିଲା, ଯିଏ କି ଅସଲ ସତ ଜାଣିବାକୁ ଥରେ ସୁବିଧା ମାଗିଥିଲା ।

ସୁଲିଭାନ୍ ଏବେ ଭାବନା ଅନୁସାରେ ଗତି କରିବାରେ ପୋଖତ ହୋଇସାରିଥାଏ । ଅନ୍ୟମାନଙ୍କୁ ସେ ବିଷୟ ଶିଖାଇ ଚାଲିଥାଏ । କିନ୍ତୁ ଜୋନାଥନ୍ ବିଷୟରେ ତା'ର ସନ୍ଦେହ ହେଲା : " ଜନ୍ ! ତମେ ଏକଦା ଜାତିରୁ ତଡ଼ା ଖାଇଥିଲ ନା ? ଏବେ ପୁଣି କିପରି ଭାବୁଛ ଯେ, ତୁମ ଦଳର କେହି ତୁମ କଥା ଶୁଣିବେ ? ତୁମେ ତ, ଲୋକଙ୍କ କଥା ଜାଣିଛ । ସେଇଟା ସତ ' ଯେ ପକ୍ଷୀ ଉଡ଼େ ଯେତେ ଦୂର, ସେ ଜାଣେ ତହିଁର ସମ୍ଭାର ।' *ଯେଉଁ ସମୁଦ୍ରପାରା ଅତି ଉଚ୍ଚକୁ ଉଡ଼ିପାରେ, ସେ ସେତିକି ଅଧିକ ନୂଆ କଥା ଜାଣିପାରେ ।* ତମେ ଆସିଥିବା ଜାଗାର

ସମୁଦ୍ରପାରାମାନେ ତ ଭୂମି ଉପରେ ଠିଆ ହୋଇ ରହନ୍ତି । ରାବନ୍ତି ଆଉ ନିଜ ଭିତରେ ଯୁଝନ୍ତି ।

ସେମାନେ ସ୍ୱର୍ଗଠାରୁ ହଜାରେ ମାଇଲ୍ ଦୂରରେ । ଆଉ ତମେ ଚାହୁଁଛ ସେମାନଙ୍କୁ ସ୍ୱର୍ଗ ଦେଖାଇବ -ସେମାନେ ଯେଉଁଠି ଅଛନ୍ତି , ସେଇ ଜାଗାରୁ ? ଜନ୍ ! ସେମାନେ ତ ତାଙ୍କ ନିଜ ଡ଼େଣାର ଅଗ ଦେଖି୍ ପାରନ୍ତି ନାହିଁ । ଏଠାରେ ରୁହ । ଏଠାର ନୂଆ ସମୁଦ୍ରପାରାଙ୍କୁ ସାହାଯ୍ୟ କର । ବିଶେଷ ଭାବରେ, ତୁମେ କହିବାକୁ ଚାହୁଁଥିବା କଥା, ଶୁଣିବାକୁ ସେମାନେ ଅନେଇ ରହିଛନ୍ତି ।'' କିଛି ସମୟ ପାଇଁ ଚୁପ୍ ରହିଲା ପରେ ସେ କହିଲା : '' ସିଆଗ୍ ଯଦି ତା'ର ପୁରୁଣା ଜାଗାକୁ ଚାଲି ଯାଇଥାନ୍ତା, ତେବେ ଆଜି ତୁମେ କେଉଁଠି ଥାଆନ୍ତ ? ''

ତା'ର ଶେଷ କଥାଟି ଜୋନାଥନ୍‌ର ମନକୁ ଧରିଲା । ସତ କଥା ତ ! *ଯେ ପକ୍ଷୀ ଉଡ଼େ ଯେତେ ଦୂର, ସେ ଜାଣେ ତହିଁର ସନ୍ଧାନ !*

ଜୋନାଥନ୍ ସେଠାରେ ରହିଲା । ନୂଆ ନୂଆ ଆସୁଥିବା ପକ୍ଷୀମାନଙ୍କ ସହିତ ମିଶି କାମ କଲା । ସେମାନେ ବେଶ୍ ଉଜ୍ଜ୍ୱଳ ଥିଲେ, ଆଉ ଶୀଘ୍ର ଶୀଘ୍ର ଶିଖି ପାରୁଥିଲେ । ମାତ୍ର ତା' ମନକୁ ସେଇ ପୁରୁଣା ଭାବନା ପୁଣି ଫେରି ଆସିଲା । ପୃଥିବୀରେ ହୁଏତ ଗୋଟେ ଯୋଡ଼େ ସମୁଦ୍ରପାରା ରହିଯାଇ ଥାଇପାରନ୍ତି, ଯେଉଁମାନେ କି ଉଡ଼ାଣ ଶିଖିପାରନ୍ତେ । ସେ ଇଚ୍ଛା କଲେ ମଧ୍ୟ ଏ ଭାବନାକୁ ମନରୁ ଦୂର କରି ପାରିଲା ନାହିଁ । ଯେଉଁ ଦିନ ସେ ଦଳରୁ ତଡ଼ା ଖାଇଲା, ସେଦିନ ଯଦି ସିଆଗ ଆସିଥାଆନ୍ତା, ତାହା ହେଲେ ଆଜିର ସମୟ ବେଳକୁ ସେ ଆହୁରି କେତେ ଅଧିକ ଶିଖି୍ ଯାଇଥାଆନ୍ତା ।

" ସୁଲି, ମୁଁ ନିଶ୍ଚୟ ଫେରିଯିବି ।" ସେ ଶେଷରେ କହିଲା । " ତୁମ ଛାତ୍ରମାନେ ତ ବେଶ୍ ଭଲ କରୁଛନ୍ତି । ସେମାନେ ନୂଆରେ ଆସିବା ସମୁଦ୍ର ପାରାମାନଙ୍କୁ ଶିଖାଇବାରେ ତୁମକୁ ସାହାଯ୍ୟ କରି ପାରିବେ ।"

ସୁଲିଭାନ୍ ଦୀର୍ଘ ନିଃଶ୍ୱାସଟିଏ ଛାଡ଼ିଲା । ମାତ୍ର ସେ ଯୁକ୍ତି କଲା ନାହିଁ। " ଜୋନାଥନ୍, ମୁଁ ତୁମକୁ ହରାଇବି ।" ସେ କେବଳ ଏତିକି କହିଲା ।

" ଛି, ସୁଲି !ଏମିତି ଅବୁଝା ହୁଅନ୍ତି ?" ଜୋନାଥନ୍ ତାକୁ ବେଶ୍ ବୁଝାଇ କରି କହିଲା । " ତୁମେ ଭାବିଲ ଦେଖି । କ'ଣ ପାଇଁ ଆମେ ଏଠାରେ ପ୍ରତିଦିନ ଅଭ୍ୟାସ କରୁଛେ ? ଯଦି ଆମର ବନ୍ଧୁତା ସ୍ଥାନ ଓ କାଳ ପରି ଜିନିଷ ଉପରେ ନିର୍ଭର କରେ, ତେବେ ସ୍ଥାନ ଓ କାଳକୁ ଆମେ ଆୟତ୍ତକୁ ନେଇ ଆସିଲା ପରେ ଆମର ଭାଇ ଭାଇ ସମ୍ପର୍କ ତୁଟିଯିବ !"

" ମାତ୍ର ଏଇ ସ୍ଥାନକୁ ଅତିକ୍ରମ କରିବା ପରେ ଯାହା କିଛି ଆମେ ଛାଡ଼ିଯିବା ସେସବୁ ଏଠାରେ ରହିବ । ସେହିପରି କାଳକୁ ଅତିକ୍ରମ କରିବା ପରେ ଯାହା କିଛି ଛାଡ଼ିଯିବା, ତାହା ଏଇ ବର୍ତ୍ତମାନ । ଆଉ 'ଏ ସ୍ଥାନ' ଓ 'ବର୍ତ୍ତମାନ' ମଧ୍ୟରେ ତୁମେ କ'ଣ ଭାବୁଛ ଯେ, ଆମର ପୁଣି ଥରେ ଦୁଇଥର ଭେଟ ହେବନାହିଁ ?"

ସୁଲିଭାନ୍ ସମୁଦ୍ରପାରା ନିଜ ଅନିଚ୍ଛାରେ ବି ଟିକିଏ ହସିଲା । " ଆରେ ପାଗଳା ପକ୍ଷୀ", ସେ ଦୟା ମିଶାଇ କହିଲା । " ଯଦି କିଏ ଭୂମି ଉପରେ ଠିଆ ହୋଇ କାହାକୁ ହଜାର ମାଇଲ କ'ଣ ତାହା

ଦେଖାଇପାରେ ଓ ତାହା ଶିଖାଇପାରେ-ସିଏ ହେଉଛି ଜୋନାଥନ୍ ଲିଭିଂଷ୍ଟୋନ୍ ସମୁଦ୍ର ପାରା । '' ସେ ବାଲିକୁ ଚାହିଁଲା ।'' ବିଦାୟ, ଜନ୍ , ବନ୍ଧୁ ମୋର । ''

'' ବିଦାୟ, ସୁଲି ! ଆମେ ପୁଣି ଭେଟିବା । '' ଏତିକି କହି ଜୋନାଥନ୍ ତା'ର ଭାବନାରେ ଆଉ ଏକ ସମୟର ଆଉ ଏକ ଉପକୂଳର ଗୋଟିଏ ସମୁଦ୍ର ପାରା ଦଳ କଥା ମନକୁ ଆଣିଲା । ସେ ଏ ବିଷୟ ତାର ଅଭ୍ୟାସ ଦ୍ୱାରା ସହଜ କରି ଦେଇଥିଲା । ସେ ଜାଣିଥିଲା, ସେ କେବଳ ହାଡ଼ମାଂସର ଏକ ଦେହ ନୁହେଁ, ସେ ଏକ ପୂର୍ଣ ଚେତନାର ମୁକ୍ତ ଉଡ଼ାଳୀ ଏବଂ କୌଣସି ସୀମା ଦ୍ୱାରା ସେ ବନ୍ଧା ନୁହେଁ ।

ସମୁଦ୍ରପାରା ଫ୍ଲେଚର୍ ଲାଇଣ୍ଡ ବେଶ୍ ଛୋଟ ଥିଲା । ମାତ୍ର ସେ ବୁଝି ପାରିଥିଲା ଯେ, ଅନ୍ୟ କେଉଁ ଦଳ ନିଜ ସାଥିମାନଙ୍କ ପ୍ରତି ଏପରି ରୁକ୍ଷ ଆଉ ଅନ୍ୟାୟ କରିପାରେ ନାହିଁ ।

'' କିଏ କ'ଣ କହୁଛି, ମୁଁ ସେଥିକୁ ଖାତିର କରେନାହିଁ । '' ସେ ଜୋର୍ ଦେଇ ଭାବୁଥିଲା । ଦୂର ପାହାଡ଼ ଶିଖରକୁ ଉଡ଼ିଯିବା ବେଳେ ଆଖିକୁ ତା'ର ଝାପ୍‌ସା ଝାପ୍‌ସା ଦିଶୁଥିଲା । '' ଏଠିକି ସେଠିକି ଡ଼େଣା ବାଡ଼େଇ ଉଡ଼ି ଯିବାରେ କିଛି ନାହିଁ । ଅସଲ କଥା ହେଉଛି *ଉଡ଼ାଣ କୌଶଳ* । ବହୁତ କିଛି ଶିଖିବାର ଅଛି । ଆଉ ଏଇ ସାଧା ଉଡ଼ିବା ... ଛିଃ । *ମଶାଟିଏ* ମଧ୍ୟ ସେପରି ଉଡ଼େ । ଦଳର ବୟସ୍କ ସମୁଦ୍ରପାରା ପାଖରେ ମୁଁ ଗୋଟିଏ ଗଡ଼ାଣିଆ ଉଡ଼ାଣ କୌଶଳ ଦେଖେଇଲି, ଖାଲି କଉତୁକରେ – ହେଲେ, ମୁଁ ହେଲି ଜାତିରୁ ବାହାର ! ସେମାନେ କ'ଣ ଅନ୍ଧ ? ସେମାନେ କ'ଣ କିଛି ଦେଖିପାରନ୍ତି ନାହିଁ ? ସେମାନେ କ'ଣ

ଭାବିପାରନ୍ତି ନାହିଁ ଯେ, ପ୍ରକୃତ ଉଡ଼ିବା ଶିଖିବାରେ ଆମର ମାନ ସମ୍ମାନ ଅଛି ବୋଲି ?

" ସେମାନେ ଯାହା ବିଚାର କରନ୍ତୁ , ମୁଁ ଖାତିର କରେନାହିଁ । ଅସଲି ଉଡ଼ିବାଟା କ'ଣ — ମୁଁ ତାଙ୍କୁ ଦେଖେଇ ଦେବି । ମୁଁ ପୂରାପୂରି ଜାତିରୁ ବାହାର ହୋଇଯିବି । ଅବଶ୍ୟ ସେମାନେ ଯଦି ତାହା ଚାହାନ୍ତି । ଆଉ ମୁଁ ଏପରି କାମ କରିବି ଯେ, ସେମାନେ ଦୁଃଖିତ ହେବେ, ଏତେ ଦୁଃଖିତ ଯେ .... । "

ଏ କଥାଗୁଡ଼ାକ ତା'ର ମୁଣ୍ଡ ଭିତରୁ ଆସୁଥିଲା । ସ୍ୱର ବେଶ୍ ଭଦ୍ର ଥିଲା । ତଥାପି ସେ ଡ଼ରିଗଲା । ସିଏ ପବନରେ ଖସି ପଡୁଥିଲା, ଝାଙ୍କି ହୋଇ ଯାଉଥିଲା ।

" ସେମାନଙ୍କ ପ୍ରତି ତୁମେ କଠୋର ହୁଅ ନାହିଁ, ଫ୍ଲେଚର୍ ସମୁଦ୍ର ପାରା ! ତୁମକୁ ଦଳରୁ ବାହାର କରି ସେମାନେ କେବଳ ନିଜର କ୍ଷତି କରିଛନ୍ତି । ଦିନ ଆସିବ, ସେମାନେ ଏକଥା ବୁଝିବେ । ତୁମେ ଆଜି ଯାହା ବୁଝି ପାରିଛ, ସେମାନେ ଅନେକ ଦିନ ପରେ ବୁଝିବେ । ସେମାନଙ୍କୁ କ୍ଷମା କର । ସେମାନଙ୍କୁ ବୁଝିବାରେ ସାହାଯ୍ୟ କର । "

ତା'ର ଡ଼େଣାର ପଛପଟ ପରଠାରୁ ଇଞ୍ଚେ ଛାଡ଼ି ଉଡୁଥିଲା ଗୋଟିଏ ଉଜ୍ଜଳ ସମୁଦ୍ରପାରା – ସେ ଦେଖିଥିବା ପୃଥିବୀର ସବୁ ସମୁଦ୍ରପାରାଠାରୁ ଅଧିକ ଉଜ୍ଜଳ । ଡ଼େଣାର ଗୋଟିଏ ହେଲେ ପରକୁ ସେ ଟିକିଏ ବି ହଲାଉ ନଥିଲା । କିଛି ହେଲେ ଚେଷ୍ଟା ନକରି, ସେ ବେଶ୍ ସରଳ ଭାବେ ତା' ଗତିରେ ଉଡୁଥିଲା । ଅଥଚ ଫ୍ଲେଚର୍ ତା'ର ସବୁଠାରୁ ଅଧିକ ବେଗରେ ଉଡୁଥିଲା । ସେଇ ଭେଣ୍ଡିଆ ପକ୍ଷୀଟି ମନରେ ମୁହୂର୍ତ୍ତକ ପାଇଁ ଝଡ଼ ଉଠିଲା ।

" କ'ଣ ସବୁ ହେଉଛି ? ମୁଁ କ'ଣ ପାଗଳ ? ଏସବୁ କ'ଣ ? "

ତା' ଭିତରୁ କିନ୍ତୁ ଧୀର, ଆଉ ଶାନ୍ତ ଭାବରେ ସେଇ ସ୍ୱର ତା'ର ଭାବନାକୁ ଘାରୁଥିଲା । ଉତ୍ତର ଦାବୀ କରୁଥିଲା । " ସମୁଦ୍ର ପାରା ଫ୍ଲେଚର୍ ଲାଇଣ୍ଡ ! ତୁମେ ଉଡ଼ିବାକୁ ଚାହଁ ? "

**" ହଁ, ମୁଁ ଉଡ଼ିବାକୁ ଚାହେଁ । "**

" ଫ୍ଲେଚର୍ ଲାଇଣ୍ଡ ପାରା ! ତୁମେ କ'ଣ ସେତେ ଅଧିକ ଉଡ଼ିବାକୁ ଚାହୁଁଛ, ଯେତିକି ଉଡ଼ିଲେ ତୁମେ ତୁମର ଦଳକୁ କ୍ଷମା ଦେଇଦେବ ? ଶିଖ । କିନ୍ତୁ ଜାଣିରଖ - ଦିନେ ସେମାନଙ୍କ ପାଖକୁ ଯାଇ ସେମାନଙ୍କୁ ଜାଣିବାରେ ସାହାଯ୍ୟ କରିବାକୁ ହେବ । "

ଏଇ ଚମତ୍କାର ପକ୍ଷୀଟି କୌଶଳ ଉଡ଼ାଣରେ ବେଶ୍ ଆଗେଇଥିଲା । ହୁଏତ ବିଶେଷ ଭାବେ ଆଘାତ ପାଇ ସେ ଅଭିମାନ କରୁଥିଲା । କିନ୍ତୁ ଏଇ ସମୁଦ୍ର ପାରା ଫ୍ଲେଚର୍ କଥାରେ ମିଛ ରହିବା ସମ୍ଭବ ନୁହେଁ ।

" ମୁଁ ରାଜି । " ମୃଦୁ ସ୍ୱରରେ କହିଲା ଫ୍ଲେଚର୍ ।

" ତେବେ, ଫ୍ଲେଚ୍ " ! ସେ ଉଜ୍ଜ୍ୱଳ ପକ୍ଷୀଟି ତା'କୁ କହିଲା । କଥା ତା'ର ବେଶ୍ ମଧୁର; ଏଥିରେ ଦୟା ଭରି ରହିଥିଲା । " ଆସ, ଆମେ ସଳଖ ଉଡ଼ାଣରୁ ଆରମ୍ଭ କରିବା ... । "

**ପାହାଡ଼ ଶିଖର** ଉପରେ ଭଉଁରି କାଟି ଜୋନାଥନ୍ ଉଡୁଥିଲା ଏବଂ ଆଖି ରଖିଥିଲା । ଭେଣ୍ଡିଆ ଫ୍ଲେଚର୍‌ର ଉଡ଼ାଣ ବେଖାପ ହୋଇଥିଲେ ବି ଖୁବ୍ ଚଞ୍ଚଳ ସେ ଭଲ ଉଡ଼ାଣର ଜଣେ ଛାତ୍ର ହୋଇପାରିବ ବୋଲି ସେ ମନେ କରୁଥିଲା । ଫ୍ଲେଚର୍ ବେଶ୍ ଟାଣୁଆ ଓ ହାଲୁକା ଥିଲା । ସେ ବେଶ୍ ଚଞ୍ଚଳିଆ ଥିଲା । କିନ୍ତୁ ଅସଲ କଥା ହେଲା, ସେ ଅତି ବେଗରେ ଉଡ଼ି ଉଡ଼ାଣ ଶିଖିବାକୁ ଲାଗି ପଡ଼ିଥିଲା ।

ଏବେ ସେ ଏଇଠି ତ, ଆର ମୁହୂର୍ତ୍ତରେ ଗର୍ଜ୍ଜନ କରି ଏକ ଲମ୍ଫରେ ଦୂରରେ ଝାପସା ହୋଇ ଯାଉଥିଲା – ତା' ଗୁରୁଠାରୁ ଦେଢ଼ଶହ ମାଇଲ ଘଣ୍ଟାରେ ଅଧିକ ବେଗରେ ଉଡ଼ି ଝଲସି ଉଠୁଥିଲା । ଷୋହଳ ଭାଗର ଏକ ଉଡ଼ାଣ ଦେଖାଇବାକୁ ଚେଷ୍ଟା କରି ସେ ସିଧା ଉଠି ଧୀରେ ଲୋଟଣି ମାରି ସେଇ ଭାଗଗୁଡ଼ିକ ଗଣି ଚାଲିଥିଲା, ଉଚ୍ଚ ସ୍ୱରରେ ...

" ..... ଆଠ ..... ନଅ ..... ଦଶ..... ଦେଖ ଜୋନାଥନ୍ ! ମୁଁ ପବନଠୁ ଅଧିକ ବେଗରେ ଉଡୁଛି, ଦେଖ.... ଏଗାର .... ତୁମ-ପରିକା ମନମୁତାବକ ନିର୍ଦ୍ଦିଷ୍ଟ ଏକ ବିନ୍ଦୁରେ ମୁଁ ଅଟକିବାକୁ ଚାହେଁ ..... ବାର .... କିନ୍ତୁ , ମୁଁ ଖସଡ଼ି ଯାଉଛି । ଠିକ୍ ରୋକି ପାରୁନାହିଁ ..... ତେର .... ଏଇ ଶେଷ ତିନି ଭାଗ .... ତାହା ଛାଡ଼ି .... ଚଉଦ *ଆ ..ଆ...କ୍* । "

ଫ୍ଲେଚର୍ ଶେଷ ସୀମାରେ ପହଞ୍ଚିଲା ବେଳକୁ ପର କିପରି ଚଳାଇବାକୁ ହୁଏ ଜାଣି ନଥିଲା । ବିଫଳତା ଯୋଗୁଁ ତା'ର ଉତ୍ତେଜନା ଓ ରାଗ ବଢ଼ି ଯାଇଥିଲା । ଫଳରେ ସେ ଖସି ପଡ଼ିଲା । ପିଠି ଉପରେ ପଛପଟୁ ପିଟି ହୋଇ ପଡ଼ିଲା । ଘୂରି ଘୂରି ବେଗରେ ଖସି ଆସି ଜୋର ଆଘାତ

ଯୋଗୁଁ ନଟୁପରି ଘୂରିଗଲା । ଶେଷରେ ନିଜକୁ ସଜାଡ଼ି ନେଲା ଓ ଧକେଇ ହେଲା । ଏତିକି ବେଳକୁ ସେ ତା'ର ଗୁରୁଙ୍କଠାରୁ ଶହେ ଫୁଟ ତଳେ ଥିଲା ।

" ମୋ ସହିତ ତୁମେ କେବଳ ତୁମର ସମୟ ନଷ୍ଟ କରୁଛ, ଜୋନାଥନ୍ ! ମୁଁ ମୂକ, ଅତି ମୂର୍ଖ । ମୁଁ ଖାଲି ଚେଷ୍ଟା ପରେ ଚେଷ୍ଟା କରି ଚାଲିଛି, କିନ୍ତୁ କେବେହେଲେ ସଫଳ ହୋଇପାରିବି ନାହିଁ ।"

ଜୋନାଥନ୍ ତଳକୁ ଅନେଇ ତା'କୁ ଦେଖିଲା, ଆଉ ମୁଣ୍ଡ ଟୁଙ୍ଗାରିଲା । " ଯେ ପର୍ଯ୍ୟନ୍ତ ତୁମେ ଉଡ଼ାଣରେ ଉଠାଣକୁ ଏତେ କଠୋର କରୁଥିବ, ସେ ପର୍ଯ୍ୟନ୍ତ ତୁମେ କଦାପି ପାରିବ ନାହିଁ । ଏହା ସତ ! ଫ୍ଲେଚର୍, ଆରମ୍ଭରେ ତୁମେ ଘଣ୍ଟାକେ ଚାଳିଶ୍ ମାଇଲ୍ ହରେଇଲ । ତୁମେ ନିଜକୁ ସାବଲୀଳ କରିବା ଉଚିତ ଥିଲା । ମନେ ରଖ : ଦୃଢ଼ । କିନ୍ତୁ ସାବଲୀଳ ହେବ ।"

ସେ ସେଇ ଭେଣ୍ଡିଆ ଚିଲର ପାଖକୁ ଓହ୍ଲେଇ ଆସିଲା । " ଆସ, ଆମେ ଏବେ ଏକାଠି.ଚେଷ୍ଟା କରିବା । ଆଉ ଉଠାଣ ପ୍ରତି ନଜର ରଖ । ଏଇଟା ଏକ ସହଜ ଓ ସରଳ ଆରମ୍ଭ ।"

ତିନିମାସ ବିତିଲା ବେଳକୁ ଜୋନାଥନ୍‌ର ଛାତ୍ର ଛଅ ଜଣ ହୋଇଯାଇଥିଲେ । ସଭିଏଁ ଦଳରୁ ତଡ଼ା ଖାଇଥିବା ସମୁଦ୍ରପାରା । କିନ୍ତୁ ସେମାନେ ଉଡ଼ାଣର ମଜା ପାଇବାକୁ ଉଡ଼ାଣ କୌଶଳର ନୂଆ ନୂଆ ଚମକ ପ୍ରତି କୌତୂହଳୀ ଥିଲେ । ତେବେ କାରଣ ଜାଣିବା ବଦଳରେ ଅତି ଉଚ୍ଚ ଧରଣର ଉଡ଼ାଣ କୌଶଳ ଅଭ୍ୟାସ କରିବା ତାଙ୍କ ପକ୍ଷରେ ସହଜ ହୋଇଯାଇଥିଲା ।

‘‘ ସତ କହିବାକୁ ଗଲେ ଆମ ଭିତରୁ ସଭିଏଁ ଜଣେ ଜଣେ ସେଇ ମହାନ୍ ସମୁଦ୍ର ପାରା ଜାତିର ଗୋଟିଏ ଗୋଟିଏ **ଚେତନା** । ପ୍ରତି ଜଣ ଗୋଟିଏ ଗୋଟିଏ ଅସୀମ ସ୍ୱାଧୀନତାର ଭାବ ।’’ ଜୋନାଥନ୍ ସମୁଦ୍ର କୂଳରେ ସଞ୍ଜବେଳେ ସେମାନଙ୍କୁ କହୁଥାଏ । ‘‘ ଆମ ନିଜ ଚେତନାର ପ୍ରକୃତ ପ୍ରକାଶ ହେଉଛି ଉଚ୍ଚ ଧରଣର ଉଡ଼ାଣ । ଏଇଟା ପହିଲି ପାହାଚ । ଯାହା ସବୁ ଆମ ପାଇଁ ସୀମା ଟାଣି ଦିଏ, ସେ ସବୁକୁ ଆମେ ଏଡ଼େଇ ଦେବା ଦରକାର । ସେଥିପାଇଁ ଏଇ ଅତି ବେଗ ଉଡ଼ାଣ କୌଶଳର ଅଭ୍ୟାସ .... ।’’

.... ଏ ଭିତରେ ତା’ର ଚେଲାମାନେ ହୁଏତ ଶୋଇ ପଡ଼ିଥିବେ -ସାରା ଦିନର କଠୋର ଅଭ୍ୟାସରେ ହାଲିଆ ହୋଇ । ସେମାନେ ଏପରି ଅଭ୍ୟାସ କରିବାକୁ ଭଲ ପାଉଥିଲେ । କାରଣ ଏଥିରେ ଉତ୍ସାହ ଉତ୍ତେଜନା ଥିଲା, ବେଗ ଥିଲା । ପ୍ରତିଦିନର ପାଠ ଆହୁରି ଅଧିକ ଜାଣିବା ପାଇଁ ଶିଖିବା ପାଇଁ ତାଙ୍କର ଆଗ୍ରହକୁ ବଢ଼େଇ ଦେଉଥିଲା । କିନ୍ତୁ ସେ ଭିତରୁ କେହି ହେଲେ, ଏପରିକି ଫ୍ଲେଚର୍ ଲାଇଣ୍ଡ ମଧ୍ୟ, ବିଶ୍ୱାସ କରି ପାରୁ ନଥିଲେ ଯେ, ଚେତନାକୁ ନେଇ ଭାବ ଅନୁସାରେ ଉଡ଼ାଣ ଅଭ୍ୟାସ ଦ୍ୱାରା ସତରେ ପବନ ପରି ଉଡ଼ି ହେବ ବୋଲି ।

‘‘ ତୁମର ସାରା ଦେହ, ପରଗୁଡ଼ିକର ଗୋଟିଏ ଅଗରୁ ଆର ଅଗ ଯାଏଁ ଯେପରି ତୁମକୁ କହି ଉଠିବ : ନିଜର ଭାବନାଠାରୁ କିଛି ହେଲେ ଅଧିକ ନାହିଁ । ଯଦି ଦେହର ଗଠନ ଯୋଗୁଁ ଭାବନାର ଶିକୁଳି ଛିଣ୍ଡି ପଡୁଥାଏ, ତେବେ ଗଢ଼ା ହୋଇଥିବା ଦେହର ଶିକୁଳି ଛିଣ୍ଡିବାକୁ ଦିଆଯିବ, କିନ୍ତୁ ଭାବନାର ନୁହେଁ ।’’ କିନ୍ତୁ ସେ ଯେମିତି କହିଲେ ମଧ୍ୟ, ସେଗୁଡ଼ିକ ରହସ୍ୟ କାହାଣୀ ଭଳି ଶୁଭୁଥିଲା । ଆଉ ଚେଲାମାନେ ସେଥିପାଇଁ ଘୁମେଇ ପଡୁଥିଲେ ।

ଏହାର ମାସେ ପରେ ଜୋନାଥନ୍ କହିଲା ଯେ, ଦଳକୁ ଫେରିବାର ସମୟ ହୋଇଗଲା । " ଆମେ ପ୍ରସ୍ତୁତ ନୋହୁଁ । " ହେନେରୀ କାଲ୍‌ଭିନ୍ କହିଲା " ଆମକୁ କେହି ପଚାରିବେ ନାହିଁ । ଆମେ ଜାତିଛଡ଼ା । ଯେଉଁଠି ଆମର ଥାନ ନାହିଁ, ସେଠାକୁ ଯିବାକୁ ଆମେ ନିଜକୁ ଜୋର ଦେଇ ପଠେଇ ପାରିବୁନି । "

" ଆମେ ସ୍ୱାଧୀନ । ଆମର ଇଚ୍ଛା ଅନୁସାରେ ଆମେ ଯେ କୌଣସି ସ୍ଥାନକୁ ଯାଇ ପାରିବା; ଆଉ ଆମେ ଯାହା ଚାହିଁବା, ତାହା ହୋଇ ପାରିବା । " ଜୋନାଥନ୍ ଉତ୍ତର ଦେଲା । ସେ ବାଲି ଉପରୁ ଉଠିଲା ଏବଂ ପୂର୍ବ ଦିଗକୁ ଆଗେଇଲା । ସେ ଦିଗରେ ତାଙ୍କ ଦଳର ଘର .... ମାତୃଭୂମି ।

ଚେଲାମାନଙ୍କ ମନରେ ବେଶ୍ ରାଗ ଜାତ ହେଲା । କାରଣ ଦଳର ଆଇନ ଅନୁସାରେ ଦଳରୁ ତଡ଼ା ଖାଇଥିବା କେହି ଆଉ ଦଳକୁ ଫେରି ଆସେ ନାହିଁ । ବିଗତ ଦଶ ହଜାର ବର୍ଷ ଭିତରେ ଏଇ ନିୟମର ଖିଲାଫ ହୋଇନାହିଁ । ଆଇନ କହୁଛି 'ରହ', କିନ୍ତୁ ଜୋନାଥନ୍ କହୁଛି 'ଯାଅ' । ଏ ଭିତରେ ସେ ମାଇଲିଏ ଖଣ୍ଡେ ସମୁଦ୍ର ଉପରେ ଉଡ଼ିଗଲାଣି । ସେମାନେ ଯଦି ଆଉ ଅଧିକ ଡ଼େରି କରନ୍ତି, ତେବେ ଜୋନାଥନ୍ ଗୋଟି ଶତ୍ରୁ ଦଳ ଭିତରେ ଏକା ଏକା ପହଞ୍ଚିଯିବ ।

" ଆଚ୍ଛା, ଆମେ ଯେତେବେଳେ ଦଳର କେହି ନୋହୁ, ଆମେ ଦଳର ଆଇନ ମାନିବା ଦରକାର ନାହିଁ । ଆମେ କ'ଣ ଦଳର ? " ଫ୍ଲେଚର୍ ବେଶ୍ ଆତ୍ମ ସଚେତନ ହୋଇ କହିଲା । " ତାହା ଛଡ଼ା, ଯଦି ଉଡ଼ାଣ ଶିଖିବା କଥା, ତେବେ ସେଠାରେ ଏ ସ୍ଥାନ ଅପେକ୍ଷା ଆମେ ଢ଼େର ଅଧିକ ସାହାଯ୍ୟ ପାଇ ପାରିବା । "

ଏହାପରେ ପକ୍ଷୀ ଦଳଟି ପଶ୍ଚିମରୁ ସେଇ ସକାଳେ ଉଡ଼ିବା ଆରମ୍ଭ କଲେ । ସେମାନଙ୍କ ମଧ୍ୟରୁ ଆଠ ଜଣ ଏକ ଯୋଡ଼ା ଠିକିରି (ଡ଼ାଏମଣ୍ଡ) ନକ୍ସାରେ ପର ଅଗଗୁଡ଼ିକ ଅଧିକା ହଲେଇ ଉଡ଼ିଲେ । ଘଣ୍ଟାକୁ ଶହେ ପଇଁତିରିଶ ମାଇଲ ବେଗରେ ସମୁଦ୍ରପାରା ଦଳର ମୁଖିଆଙ୍କ ସଭା ସ୍ଥାନର କୂଳ ଡ଼େଇଁଗଲେ । ଜୋନାଥନ୍ ଆଗରେ ଥିଲା । ଫ୍ଲେଚର୍ ତା' ଡ଼ାହାଣ ପାଖରେ ବେଶ୍ ସରଳ ଭାବେ ଉଡୁଥିଲା, ବାଁ ପଟରେ ହେନେରୀ କାଲ୍‌ଭିନ୍ ବେଗ ସମାନ ରଖିବାକୁ ଲାଗି ପଡ଼ି ଥିଲା । ତା'ପରେ ପୂରା ଦଳଟି ଧୀରେ ଡ଼ାହାଣ ମୋଡ଼ ଦେଇ କିଛି ସମୟ ସରଳ, ସମତଳ ଓ କିଛି ସମୟ ଲୋଟଣୀ ଉଡ଼ାଣରେ ପବନର ଆଘାତକୁ ଏଡ଼େଇ ଓହ୍ଲେଇ ପଡ଼ିଲେ ।

ପାରା ଦଳର ଚେଁ ଚାଁ ରାବ ହଠାତ୍ ବନ୍ଦ ହୋଇଗଲା । ହଠାତ୍ ଯେମିତି ଦଳର ସବୁଦିନିଆ ଜୀବନ ଧାରା ଛିଡ଼ି ପଡ଼ିଲା । ଗୋଟିଏ ବଡ଼ ଛୁରୀ ଭଳି ଗଢ଼ି ଉଠିଥିବା ଦଳଟି ହଠାତ୍ ଚମକି ଉଠିଲା । ଟିକିଏ ସୋର ଶବ୍ଦ ନ କରି ଆଠ ହଜାର ଆଖି ଅନେଇ ରହିଥିଲେ । ଜଣକ ପରେ ଜଣେ ହୋଇ ଆଠଟିଯାକ ପାରା ସିଧା ଉପରକୁ ଉଠି ଅତି ଧୀର ଗତିରେ ଚକ୍କର ମାରି ବାଲି ଉପରକୁ ଓହ୍ଲେଇ ଆସିଲେ । ତା'ପରେ, ସବୁ ଦିନର ସାଧାରଣ କଥା ପରି ଜୋନାଥନ୍ ଉଡ଼ାଣ କୌଶଳ କହିବା ଆରମ୍ଭ କଲା ।

'' ଆରମ୍ଭରୁ କହି ରଖୁଛି '', ଜୋନାଥନ୍ ଟିକିଏ ଶୁଖିଲା ହସ ହସି କହିଲା, '' ତୁମେ ସଭିଏଁ ଟିକିଏ ଡ଼େରିରେ ଏକାଠି ହୋଇଛ । ''

ବିଜୁଳି ବେଗରେ ଦଳ ଭିତରେ ଚମକ ଖେଳିଗଲା । ସେ ପକ୍ଷୀଗୁଡ଼ାକ ଦଳ-ଛଡ଼ା, ଆଉ ସେମାନେ ଫେରି ଆସିଛନ୍ତି !! ଏପରି

... ଏପରି ତ ହେବା କଥା ନୁହେଁ । ଫ୍ଲେଚର୍ ଯେଉଁ ଲଢ଼େଇର ଆଶଙ୍କା କରୁଥିଲା, ସେଇଟା ପାରା ଦଳର ଘବରେଇବା ଭିତରେ ମିଳେଇଗଲା ।

" ଆଚ୍ଛା, ନିଶ୍ଚୟ,ଠିକ୍ କଥା । ସେମାନେ ଦଳରୁ ତଡ଼ା ହୋଇଥିବା ପାରା । " କୌଣସି ଏକ ଟୋକା ଚିଲ କହିଲା, " ମାତ୍ର, ଆରେ ହେ, ସେମାନେ ସେପରି ଉଡ଼ାଣ କେଉଁଠୁ ଶିଖିଲେ ? "

ଦଳ ମୁଖିଆଙ୍କ କଥାଟି ଦଳ ଭିତରେ ସବୁ ସମୁଦ୍ରପାରାଙ୍କ ପାଖରେ ପହଞ୍ଚିବାକୁ ଘଣ୍ଟାଏ ଲାଗିଲା । - " ସେମାନଙ୍କୁ ଏଡ଼ି ଦିଅ । ଯେଉଁ ସମୁଦ୍ରପାରା ଦଳରୁ ତଡ଼ା ଖାଇଥିବା ସମୁଦ୍ରପାରା ସହିତ କଥା ହେବ, ସେ ମଧ୍ୟ ଦଳରୁ ତଡ଼ା ଖାଇବ । ସେଇ ଦଳ-ବାହାର ସମୁଦ୍ରପାରାଙ୍କୁ ଚାହିଁବା ମଧ୍ୟ ଦଳର ଆଇନ ଭାଙ୍ଗିବା । "

ପାଉଁଶିଆ ରଙ୍ଗର ପରଥିବା ପାରା ଗୁଡ଼ିକର ପିଠି ଜୋନାଥନ୍ ଆଡ଼କୁ ବୁଲି ପଡ଼ିଲା । ତେବେ ସେ ତେଣିକି ଆଖି ଦେଲାନି । ସିଧାସଳଖ ସେ ସେଇ ସଭା ଭୂଇଁରେ ଅଭ୍ୟାସ ଆରମ୍ଭ କରିଦେଲା । ପହିଲି ଥର ପାଇଁ ଜୋନାଥନ୍ ତା'ର ଚେଲାମାନଙ୍କୁ ନିଜ ନିଜର ପାରିଲା ପଣିଆ ଅନୁସାରେ ଅଭ୍ୟାସ କରିବାକୁ ତାଗିଦ୍ କରିଦେଲା ।

" ମାର୍ଟିନ୍ ! " ଆକାଶ ଉପରୁ ସେ ପାଟି କରି କହିଲା, " ତୁ ଧୀର ଉଡ଼ାଣ ଜାଣିଛୁ ବୋଲି କହୁଥିଲୁ ନା ? ତୁ କିଛି ଜାଣିନୁ । ତୋତେ କାମରେ ଦେଖାଇ ଦେବାକୁ ପଡ଼ିବ । ଉଡ୍ । "

ମାର୍ଟିନ୍ ଉଇଲିଅମ୍ ସମୁଦ୍ରପାରା ଚମକି ପଡ଼ିଲା, ସେ ତା'ର ଗୁରୁଙ୍କ ଆଖିରେ ଧରା ପଡ଼ିଯାଇଛି । ଧୀର ମତିଗତିର ଟୋକା

ସମୁଦ୍ରପାରା ମାର୍ଟିନ୍ ଭୟ କରିଗଲା । ହେଲେ କ୍ରମେ ସେ ଧୀର ଗତିରେ ପୋଖତ ହୋଇଉଠିଲା । ଅତି ଧୀର ପବନରେ ବି ସେ ତା'ର ଡ଼େଣାକୁ ଟିକିଏ ଭାଙ୍ଗି, ଡ଼େଣା ନ ବାଡ଼େଇ ଓ ଲମ୍ଫ ନଦେଇ ଆକାଶ ଉପରକୁ ଉଠି ପାରୁଥିଲା ଏବଂ ଆକାଶରୁ ତଳକୁ ଆସି ଯାଉଥିଲା ।

ସେହିପରି ଚାର୍ଲସ୍ ରୋଲାଣ୍ଡ ସମୁଦ୍ରପାରା ପ୍ରବଳ ପାହାଡ଼ିଆ ପବନରେ ଚବିଶି ହଜାର ଫୁଟ ଉପରକୁ ଉଠି ତଳକୁ ଆସିଲା ବେଳକୁ ଉପରର ଶୀତଳ ପବନରେ ନୀଳ ପଡ଼ି ଯାଇଥିଲା । ଅଥଚ ସେ ବେଶ୍ ଖୁସି ଓ ଉତ୍ସାହିତ ହୋଇ ଉଠିଥିଲା ଏବଂ ଆସନ୍ତା କାଲି ଆହୁରି ଉଚ୍ଚକୁ ଉଡ଼ିବାକୁ ସଂକଳ୍ପ କରିଥିଲା ।

ଫ୍ଲେଚର୍ ସମୁଦ୍ରପାରା ଉଡ଼ାଣ କୌଶଳ ଶିଖିବାରେ ସମସ୍ତଙ୍କଠାରୁ ଅଧିକ ଆଗ୍ରହୀ ଥିଲା । ସେ ସେଦିନ ଷୋହଳଟି ଶୂନ୍‌ଚିତ୍ ମାରି ଉପରକୁ ଉଠିବାର କୌଶଳ ଆୟତ୍ତ କରିନେଲା । ତା' ପରଦିନ ସେଥିରେ ଆହୁରି ଟପି ଯାଇ ତିନି ଗଡ଼ାଣିଆ ଚକ୍କର କୌଶଳ ମଧ୍ୟ ଦେଖେଇଦେଲା । ତା'ଦେହର ପରଗୁଡ଼ାକ ସୂର୍ଯ୍ୟ କିରଣରେ ସତେ ଯେପରି ଧଳା ଆଲୋକ ଜାତ କରୁଥିଲେ । ଅନେକ ଆଖି ତା'ର ସେଇ ଉଡ଼ାଣ କୌଶଳକୁ ଅନେଇ ରହିଥିଲେ ।

ପ୍ରତି ଘଣ୍ଟାରେ ଜୋନାଥନ୍ ତା'ର ପ୍ରତ୍ୟେକ ଛାତ୍ର ପାଖରେ ପହଞ୍ଚି ଯାଉଥିଲା । ଉଚିତ୍ ଉଡ଼ାଣ କୌଶଳ ଦେଖେଇ ବୁଝେଇ, ଉପଦେଶ ଦେଇ, ଜୋର୍ କରି ଅଭ୍ୟାସ କରେଇ ଆଗେଇ ନେଉଥିଲା । ରାତିର ଅନ୍ଧାରରେ, ମେଘ ଆଉ ଝଡ଼ ବରଷାରେ ମଧ୍ୟ ସେ ନିଜେ ସେମାନଙ୍କ ସାଥିରେ ଉଡୁଥିଲା । ସେଇଟା ଥିଲା ଖେଳ ଆଉ ଅଭ୍ୟାସ । ହେଲେ ସେ ସମୟରେ ସମୁଦ୍ରପାରା ଦଳଟି ବାଲି ଉପରେ ମନ ମାରି ବସି ରହିଥାନ୍ତି ।

ଉଡ଼ାଣ ଅଭ୍ୟାସ ପରେ ଛାତ୍ରମାନେ ବାଲି ଉପରେ ହାଲିଆ ମାରନ୍ତି । ସେ ସମୟରେ ସେମାନେ ଜୋନାଥନ୍‌ର ଉପଦେଶ ବେଶ୍ ମନ ଦେଇ ଶୁଣିନିଅନ୍ତି । ହେଲେ ତା'ର କେତୋଟି ଆକାଶ-ଛୁଆଁ କଥା ସେମାନେ ବୁଝି ପାରନ୍ତି ନାହିଁ । ମାତ୍ର ସେମାନଙ୍କ ଭିତରୁ କେତୋଟି ଭଲ ସମୁଦ୍ରପାରାଙ୍କୁ ସେ ବାଛି ନେଇଥାଏ – ସେମାନେ ବୁଝନ୍ତି ।

କ୍ରମେ କ୍ରମେ ଜୋନାଥନ୍‌କୁ ଘେରି ବସିଥିବା ତା'ର ଚେଲାମାନଙ୍କ ପଛରେ ଆଉ ଗୋଟିଏ ଧାଡ଼ି ଦେଖାଦେଲା । ଜୋନାଥନ୍‌ର କଥା ଶୁଣିବାକୁ କେତେକ କୌତୂହଳୀ ସମୁଦ୍ରପାରା ଚେଲାଙ୍କ ପଛରେ ଘେରି ବସି ଶୁଣୁଥିଲେ । ରାତିର ଅନ୍ଧାରରେ ଘଣ୍ଟା ଘଣ୍ଟା ଧରି ଚୁପ୍‌ଚାପ ବସି ସେମାନେ ଶୁଣୁଥିଲେ ଏବଂ ରାତି ପାହିବା ଆଗରୁ ଧୀରେ ଖସି ଚାଲି ଯାଉଥିଲେ - ଯେପରି କିଏ କାହାକୁ ନ ଦେଖେ, ଆଉ ତାଙ୍କୁ କେହି ନ ଦେଖେ ।

ଏପରି ମାସେ ବିତିଲା ବେଳକୁ ସମୁଦ୍ର ପାରା ଦଳରୁ ଜଣେ ଗାର ଡ଼େଇଁ ଆସିଲା । ଆଉ କିପରି ଉଡ଼ାଣ ଶିଖିବାକୁ ହୁଏ, ପଚାରିଲା । ଏଇ ଟେରେନ୍‌ସ ଲୋଏଲ୍ ସମୁଦ୍ରପାରାକୁ ତାଙ୍କ ଦଳ ଦୋଷ ଦେଲା ଓ ଦଳରୁ ତଡ଼ିଦେଲା ; ସେ ହେଲା ଜୋନାଥନ୍‌ର ଅଷ୍ଟମ ଛାତ୍ର ।

ତା' ପର ରାତିରେ କିର୍କ୍ ମେ'ନାର୍ଡ୍ ବାଲିରେ ଘୁଷୁରି ଘୁଷୁରି ଦଳରୁ ବାହାରି ଆସିଲା । ଲାଗୁଥିଲା ଯେପରି ସେ ତା'ର ବାଁ ଡ଼େଣାଟିକୁ ଟାଣି ଟାଣି ଆଣୁଥିଲା । ଜୋନାଥନ୍‌ର ପାଦ ତଳେ ସେ ବେହୋସ ହେଲା ପରି ପଡ଼ିଗଲା । କହିଲା, "ମୋତେ ସାହା ହୁଅ ।" ସେ ଅତି ଧୀରେ କହୁଥିଲା - ଯେପରି ମରି ଆସୁଥିବା ଲୋକ କହେ । " ଜଗତରେ ସବୁ ଜିନିଷଠାରୁ ଉଡ଼ାଣ ଶିଖିବାକୁ ମୁଁ ଭଲପାଏ.... ।"

“ ଏଠାକୁ ଆସି ଯାଅ । ” ଜୋନାଥନ୍ କହିଲା । “ ମୋ ସାଥିରେ ଭୂଇଁରୁ ଉଠି ଉପରକୁ ଉଡ଼ିଚାଲ । ଚାଲ, ଆମେ ଉଡ଼ା ଆରମ୍ଭ କରିବା ।”

“ ତୁମେ ବୁଝିନାହଁ । ମୋ ଡ଼େଣା ! ମୁଁ ତ ମୋର ଡ଼େଣା ଚଳେଇ ପାରୁନି । ”

“ ମେ’ନାର୍ଡ଼ ପାରା ! ତୁମେ ଯାହା, ତାହା ହେବା ପାଇଁ ତୁମର ସ୍ୱାଧୀନତା ଅଛି । ତୁମର ନିଜ ପ୍ରାଣର ଅସଲି ରୂପ ଏଠାରେ ଏବଂ ଏବେ ତୁମେ ପ୍ରକାଶ କରିପାରିବ । ତୁମକୁ ବାଧା ଦେବାକୁ ଜଗତରେ କିଛି ନାହିଁ । ଆମ ମହାନ ସମୁଦ୍ରପାରା ଜାତିର ସେଇଟା ଆଇନ୍ । ସେଇଟା ହିଁ ନିୟମ । ”

“ ତୁମେ କ’ଣ ତା’ହେଲେ କହୁଛ ଯେ, ମୁଁ ଉଡ଼ିପାରିବି ? ”

“ ମୁଁ କହୁଛି, ତୁମେ ସ୍ୱାଧୀନ । ”

ଅତି ସରଳ ଭାବେ ସଙ୍ଗେ ସଙ୍ଗେ କିର୍କ୍ ମେ’ନାର୍ଡ଼୍ ତା’ର ଦୁଇ ଡ଼େଣାକୁ ଲମ୍ବେଇ ଦେଲା - ବିଶେଷ କିଛି ବଳ ଲଗେଇବାକୁ ପଡ଼ିଲା ନାହିଁ । ରାତିର ସେଇ ଅନ୍ଧାରରେ ସେ ଉପରକୁ ଉଠିଲା । ତା’ର ରାବରେ ସମୁଦ୍ରପାରା ଦଳର ନିଦ ଭାଙ୍ଗିଗଲା । ସେ ପ୍ରାୟ ପାଞ୍ଚ ହଜାର ଫୁଟ ଉଚ୍ଚରୁ ବଡ଼ ପାଟିରେ କହି ଉଠୁଥିଲା, “ ମୁଁ ଉଡ଼ିପାରେ, ଶୁଣ, ମୁଁ ଉଡ଼ିପାରେ । ”

ସୂର୍ଯ୍ୟ ଉଦୟ ହେଲା ବେଳକୁ ହଜାରେ ହେବ ସମୁଦ୍ରପାରା ଜୋନାଥନ୍‌ର ଚେଲାମାନଙ୍କ ପଛରେ ଠିଆ ହୋଇ ଯାଇଥିଲେ । ସଭିଏଁ

ଚକିତ ହୋଇ ମେ'ନାର୍ଡ୍ ଆଡ଼କୁ ଅନେଇ ରହିଥିଲେ । ସେମାନଙ୍କୁ କିଏ ଦେଖୁଛି କି ନାହିଁ , ସେ କଥାକୁ ସେମାନେ ଖାତିର କରୁ ନ ଥିଲେ । ସେମାନେ କେବଳ ଜୋନାଥନ୍‌ର  କଥାକୁ କାନେଇ ଥିଲେ, ସେକଥା ବୁଝିବାକୁ ଚେଷ୍ଟା କରୁଥିଲେ ।

ଜୋନାଥନ୍  କେବଳ ସେଇ କଥା କହୁଥିଲା । ଅତି ସରଳ ଭାବରେ ସହଜ କାମର କଥା । ସମଦ୍ରପାରା ପାଇଁ  ଉଡ଼ାଣ ହିଁ ଠିକ୍ । ତା'ର ଜୀବନର ମୂଳ ହେଲା... ସ୍ୱାଧୀନତା । ସ୍ୱାଧୀନ ଭାବେ କାମ କରିବାରେ ଯାହା ବାଧା ଦିଏ, ତାହାକୁ ଏଡ଼େଇ ଯିବାକୁ ହେବ । ଦଳର ପରମ୍ପରା ହେଉ, କି ଅନ୍ଧବିଶ୍ୱାସ ହେଉ କିମ୍ୱା ଆଉ କିଛି ବା ହେଉ; ଯାହା ଆମର କାମକୁ ଅଟକାଇ ଦିଏ, କି ସ୍ୱାଧୀନତାକୁ ବାଧା ଦିଏ କି ଆଗେଇ ଯିବାବେଳେ  ଲକ୍ଷ୍ମଣ ରେଖା ଟାଣି ଦିଏ — ତାହା ଛାଡ଼ିବାକୁ ହେବ ।

" ହଁ, ହଁ, ତାହା ଛାଡ଼ିବାକୁ ହେବ  । " ଗହଳି ଭିତରୁ କିଏ ଜଣେ ପାଟି କରି କହିଲା । " ହେଉ ପଛକେ ସେଇଟା  ଦଳର ଆଇନ୍ ! "

" ଆମ ପାଇଁ  ଆଇନ୍ କେବଳ ଗୋଟିଏ - " ଜୋନାଥନ୍ କହିଲା । " ଯାହା ଆମକୁ ସ୍ୱାଧୀନ ଭାବରେ କାମ କରି ଆଗେଇ ନେଇପାରେ । ଆଉ କିଛି ଆଇନ ନାହିଁ  । "

" ଆମେ ସବୁ ତୁମ ପରି କିପରି ଉଡ଼ିପାରିବୁ  ?  ତୁମେ କ'ଣ ଭାବୁଛ ଆମେ ପାରିବୁ   ? " ଆଉ ଜଣେ କିଏ ପଚାରିଲା । " ତମେ ଆମର ଏ ସବୁ ପକ୍ଷୀଠାରୁ ଅଲଗା, ଭିନ୍ନ ଧରଣର, ଦେବତା ପରି ସବୁଠୁଁ ବଡ଼ । ତୁମର ଦେବତା-ପଣ ଅଛି । "

“ ଏମାନଙ୍କୁ ଦେଖ : ଫ୍ଲେଚର୍ ! ଲୋଏଲ୍ ! ଚାର୍ଲ୍ସ୍ - ରୋଲାଣ୍ଡ୍ ! ଜୁଡି ଲି’ ! ... ଏମାନେ ସବୁ କ’ଣ ଅଲଗା, ଆଉ ଏମାନଙ୍କ ଠାରେ କିଛି ଅଧିକା ଗୁଣ ଅଛି ? ଏମାନେ କ’ଣ ଦେବତା ? କେହି ହେଲେ ତୁମଠାରୁ ଭିନ୍ନ ନୁହନ୍ତି, ମୋ ଠାରୁ ଅଲଗା କି ଅଧିକ ନୁହନ୍ତି ! କେବଳ ଗୋଟିଏ କଥା ଅଲଗା ସେଇ ଗୋଟିକ ଭିନ୍ନ ବିଷୟ ହେଉଛି, ସେମାନେ ବୁଝିବାକୁ ଚେଷ୍ଟା କରିଛନ୍ତି – ସେମାନେ ନିଜେ ସତରେ କ’ଣ, ବୁଝିଲା ପରେ ଅଭ୍ୟାସ ଆରମ୍ଭ କରିଛନ୍ତି ।”

ଫ୍ଲେଚର୍‌କୁ ଛାଡ଼ି ଆଉ ସବୁ ଚେଲାଙ୍କୁ କିମିତି ଟିକିଏ ଅଡୁଆ ଲାଗୁଥିଲା ଏ କଥାଗୁଡ଼ିକ ! ସେମାନେ ଏ ଯାଏଁ ବୁଝି ପାରି ନ ଥିଲେ ଯେ, ସେମାନେ ସତରେ କ’ଣ କରୁଛନ୍ତି !

ଦିନକୁ ଦିନ ଦଳ ବଢ଼ି ଚାଲିଲା । ସେମାନେ ପ୍ରଶ୍ନ ପଚାରିଲେ । ଭଲ ମନ୍ଦ ବୁଝିପାରିଲେ, ଭଲ ନୀତିକୁ ଆଦରି ନେଲେ । ଖରାପକୁ ନାକ ଟେକିଲେ ।

ସେଦିନ ଆଗୁଆ ଉଡ଼ାଣରେ ବେଗ ବଢ଼ାଇବା ଅଭ୍ୟାସ କରିସାରିବା ପରେ ଫ୍ଲେଚର୍ କହିଲା ଜୋନାଥନ୍‌କୁ – “ ତୁମେ ନିଜେ ସେଇ ମହାନ୍ ସମୁଦ୍ରପାରାର ପୁଅ ହୋଇଥିବ ବୋଲି ସଭିଏଁ କଥାଭାଷା ହେଉଛନ୍ତି । ତୁମେ ତ ଏ ସମୟ ଠାରୁ ହଜାରେ ବରଷ ଆଗରେ ।”

ଜୋନାଥନ୍ ଦୀର୍ଘ ନିଃଶ୍ୱାସ ଛାଡ଼ିଲା । ସେ ଭାବିଲା ଏଇଟା ଭୁଲ ବୁଝାମଣାର ଫଳ । ସେମାନେ ଦେବତା କହନ୍ତୁ ନ ହେଲେ ଶୟତାନ କହନ୍ତୁ । “ ତୁମେ କ’ଣ ଭାବୁଛ, ଫ୍ଲେଚର୍ । ଆମେ କ’ଣ ଆଜିର ସମୟଠାରୁ ଆଗରେ ଅଛେ ?”

ବେଶ୍ କିଛି ସମୟ ପାଇଁ ସଭିଏଁ ନୀରବ ରହିଲେ । " ଆଚ୍ଛା, ଏ ଧରଣର ଉଡ଼ାଣ ସବୁବେଳେ ଥିଲା, ଅଛି । ହେଲେ ଯିଏ କିଛି ନୂଆ ଅବା ଅଧିକା ଶିଖିବାକୁ ଚାହୁଁଛି , ସେ ଶିଖିପାରୁଛି । ସମୟ ସହିତ ତାହାର କିଛି ସମ୍ପର୍କ ନାହିଁ । ହୁଏତ ଆମେ ଆମର ରୀତି ନୀତି ଠାରୁ ଆଗରେ ଅଛେ । ସେ ବାଟରେ ଯେ କୌଣସି ସମୁଦ୍ରପାରା ଆଗେଇ ପାରିବ । "

" ସେଇଟା ଗୋଟେ କଥା । " ଜୋନାଥନ୍ କହିଲା । କିଛି ସମୟ ସେ ଡ଼େଣାରେ ଭିତିରି ଭାଙ୍ଗ ଦେଇ ଲୋଟଣୀ ଉଡ଼ାଣ ଦେଖାଇଲା । " ସମୟଠାରୁ ଆଗେଇ ଯିବାକୁ ହେଲେ ଏଇଟା ତା'ର ଅଧା ବାଟ ବି ନୁହେଁ । "

ଆଉ ସପ୍ତାହେ ପରେ । କେତେ ଜଣ ନୂଆ ଛାତ୍ରଙ୍କୁ ଫ୍ଲେଚର୍ ଅତି ବେଗ ଉଡ଼ାଣ ଶିଖାଉଥିଲା । ସେ ସାତ ହଜାର ଫୁଟ ଉଚ୍ଚରୁ ଏକ ଉଚ୍ଚା ଡ଼ିଆଁ ମାରିଆସିଲା ବେଳକୁ ଦେଖିଲା କୂଳର ବାଲିରୁ ଅଳପ କେତେ ଇଞ୍ଚ ଉପରେ ଗୋଟିଏ ପିଲା ପକ୍ଷୀ ତାହାର ପହିଲି ଉଡ଼ାଣ ଶିଖିବା ଭିତରେ ସିଧା ଉଠି ଆସିଲା ତା' ବାଟକୁ; ଆଉ ତା' ମାଆକୁ ଡ଼ାକ ପକାଇଲା ।

ଗୋଟିଏ ସେକେଣ୍ଡର ଦଶଭାଗରୁ ଭାଗେ ସମୟ ଭିତରେ ପିଲା ପକ୍ଷୀଟିକୁ ବଞ୍ଚେଇବାକୁ ଯାଇ ସେ ବାଆଁ ପଟକୁ ଗଡିର ବାଟ ବଦଳେଇଦେଲା । ଘଣ୍ଟାକୁ ଦୁଇ ଶହ ମାଇଲ୍‌ର ସେଇ ପ୍ରଚଣ୍ଡ ବେଗରେ ଯାଇ ସେ ପଡ଼ିଲା ଦୂରରେ ଏକ ମୁଗୁନି ପଥରର ପାହାଡ଼ ଶିଖରେ ।

ହେଲେ ଏ ପଡ଼ିଯିବାଟା ବିଚିତ୍ର ଥିଲା । ସତେ ଯେମିତି ଆଉ ଏକ ଜଗତକୁ ଯିବାପାଇଁ ସେ ପାହାଡ଼ଟା ଥିଲା ଏକ ଅତି ବଡ଼ ଓ ଟାଣ

କବାଟ । ଆଘାତରେ ତା ଦେହ ଶିହରି ଉଠିଲା, ଆଉ ମନରେ ଭୟ ଆସିଲା । ଆଘାତରେ ସେ କଳା ପଡ଼ି ଯାଇଥିଲା । ତା'କୁ ଲାଗିଲା ଯେମିତି ସେ ଏକ ଭିନ୍ନ ଦୁନିଆରେ,ସେଠାର ଆକାଶଟା ମଧ୍ୟ ଭିନ୍ନ, ବିଚିତ୍ର । ସେସବୁ ପାଶୋରି ଯାଉଥିଲା, ମନେ ପକେଉଥିଲା, ପୁଣି ପାଶୋର ଆଉ ପୁଣି ମନେ ପକାଇବା ଭିତରେ ଡ଼ରିଯାଇଥିଲା । ତେଣୁ ସେ ଦୁଃଖ କଲା । ଭା'ରି ଦୁଃଖ ।

ଜୋନାଥନ୍ ଲିଭିଂଷ୍ଟୋନ୍ ସମୁଦ୍ରପାରା ସହିତ ତା'ର ପହିଲି ଭେଟ କଥା ମନେ ପଡ଼ିଲା । ସତେ ଯେମିତି ସେଇ ସ୍ୱର ଭାସି ଆସୁଥିଲା ।

''ଫ୍ଲେଚର୍ ! ଏଇ ଉଡ଼ାଣ କୌଶଳଟା ହେଉଛି ଆମ ପାଇଁ ଥିବା ସୀମା ସରହଦକୁ ଟପି ଯିବା ସକାଶେ । ତେଣୁ ଧଇର୍ଯ୍ୟ ସହିତ ଶିଖିବାକୁ ହେବ । ପାହାଡ଼ ଦେଇ ଉଡ଼ିଯିବା ଉଡ଼ାଣ ଆମେ ଅଭ୍ୟାସ କରିନାହୁଁ । ସେଇଟା ଆଉ ଏକ ପାଠ । ''

'' ଜୋନାଥନ୍ ! ''

'' ଆହୁରି ମଧ୍ୟ ସେଇ ମହାନ୍ ସମୁଦ୍ରପାରାର ପୁଅ ବୋଲି ଜଣାଶୁଣା । '' ଶୁଖିଲା ଗଳାରେ ଗୁରୁ କହିଲେ ।

'' ତୁମେ ଏଠାରେ କ'ଣ କରୁଛ ? ଏଇ ପାହାଡ଼ର ଶିଖର ! ମୁଁ ଅଛି ତ ? ମୁଁ ନାହିଁ ? ମରିଛି ? ''

'' ଆହା , ଫ୍ଲେଚର୍ ! ଆଗେଇ ଆସ , ଚିନ୍ତା କର । ଏବେ ଯେତେବେଳେ ତୁମେ ମୋ ସହିତ କଥା ହେଉଛ, ସେଥିରୁ ବେଶ୍

ଜାଣିପାରୁଛ ଯେ, ତୁମେ ମରିନାହଁ । କ'ଣ ମରିଯାଇଛ ? ଯାହା କିଛି ହେଲା, ସେଇଟା କେବଳ ତୁମ ଚେତନାର ସ୍ତର ବଦଳ ଯୋଗୁଁ । ହଠାତ୍ ତୁମେ ଗତିର ଦିଗ ବଦଳାଇ ଦେବାରୁ ଏପରି ହେଲା । ''

''ଏବେ ତୁମର ଏକ ସୁଯୋଗର ବେଳ । ତୁମେ ଏଠାରେ ରହିପାର ଓ ଏଇ ସ୍ତରରେ ଶିକ୍ଷା କରିପାର । ଅବଶ୍ୟ ଏଇଟା ଟିକିଏ ଉଚ୍ଚ ସ୍ତରର । ବାଟରେ ତୁମେ ଛାଡ଼ି ଆସିଥିବା ସମୁଦ୍ରପାରା ଠାରୁ ଆହୁରି ଉଚ୍ଚରେ । ନଚେତ୍ ତୁମେ ଫେରିଯାଇ ତୁମ ଦଳରେ କାମ କରିପାର । ତୁମର ବୟସ୍କମାନେ କିଛି ଗୋଟିଏ କ୍ଷତି ହୋଇଯିବାର ଆଶଙ୍କା କରୁଛନ୍ତି । କିନ୍ତୁ ତୁମେ ସେମାନଙ୍କ ପାଇଁ ଯେଉଁ ଭଲ କାମ କରିପାରିଛ, ସେଥିଯୋଗୁଁ ସେମାନେ ଚକିତ, ତୁମ ପାଖରେ ଋଣୀ ବୋଲି ମାନୁଛନ୍ତି ।''

'' ମୁଁ ଦଳକୁ ଫେରିଯିବାକୁ ଚାହେଁ । ଅବଶ୍ୟ ମୁଁ ମୋର ନୂଆ ଉଡ଼ାଣ ଆରମ୍ଭ ମାତ୍ର କରିଛି । ''

'' ଖୁବ୍ ଭଲ, ଫ୍ଲେଚର୍ ! ମନେ ପକାଅ, ଦେହ ବିଷୟରେ ଆମେ ଯେଉଁ ସବୁ କଥା ହୋଇଥିଲେ । ଦେହ ନିଜ ମନ ମୁତାବକ ରୂପ ନିଏ ଓ କାମ କରେ । ଦେହଟା କିଛି ନୁହେଁ, ଦେହଟା ନିଜର ଭାବନା କେବଳ .... । ''

ଫ୍ଲେଚର୍ ମୁଣ୍ଡ ଟୁଙ୍ଗାରିଲା ଆଉ ଡ଼େଣା ମେଲାଇଲା । ସେ ପାହାଡ଼ର ମୂଳରେ ଥିଲା । ଆଖି ଖୋଲି ଦେଖିଲା - ସାରା ସମୁଦ୍ର ପାରା ଦଳର ମଝିରେ ସେ ରହିଛି । ସେ ହଲଚଲ୍ ହେବା ମାତ୍ରେ ସାରା ଦଳଟି ରାବି ଉଠିଲା, ଆନନ୍ଦରେ ଗାଇ ଉଠିଲା ।

" ସେ ବଞ୍ଚିଛି ! ମରି ଯାଇଥିବା ଫ୍ଲେଚର୍ ବଞ୍ଚି ରହିଛି ! "

" ତାକୁ ସେ ପରରେ ଛୁଇଁଥିଲେ । ସେଥିରୁ ସେ ଜୀବନ ଫେରିପାଇଛି । ସେ ସେଇ ମହାନ୍ ସମୁଦ୍ରପାରାର ପୁଅ । "

" ନା, ନା । ସେ ତାହା ମନା କରୁଛି । ସେ ଗୋଟେ ଶୟତାନ ! ଦଳକୁ ଭାଙ୍ଗି ଦେବାକୁ ଆସିଛି । "

ଦଳରେ ଚାରି ହଜାର ସମୁଦ୍ରପାରା ଥିଲେ । ଯାହା ଘଟିଗଲା, ସେଥିରେ ସମସ୍ତେ ଭୟଭୀତ ହୋଇ ଯାଇଥିଲେ । ଶଇତାନ ! ଶଇତାନ !

ଏକ ସମୁଦ୍ର ପାରା ଭଳି ପବନ ବେଗରେ ସେ ଭାବନା ସାରା ଦଳ ଭିତରେ ଖେଳିଗଲା । ଆଖିଗୁଡ଼ାକ ଡ଼ିମା ଡ଼ିମା ହୋଇ ଖୋଲି ହୋଇ ଯାଇଥିଲା । ଗୋଳିଆ ଗୋଳିଆ ଥଣ୍ଟଗୁଡ଼ିକୁ ଦେଖାଇ ହତ୍ୟା କରିବାକୁ ସେମାନେ ତାକୁ ବେଢ଼ିଗଲେ ।

" ଆମେ ଏଠାରୁ କିଛି ଦୂରକୁ ଘୁଞ୍ଚିଗଲେ ତୁମକୁ ଟିକିଏ ଅଧିକ ଭଲ ଲାଗିବ କି ? " ଜୋନାଥନ୍ ପଚାରିଲା ।

" ମୁଁ କଦାପି ବିଶେଷ ଆପତ୍ତି କରିବିନି, ଯଦି ଆମେ ସବୁ..... । "

ହଠାତ୍ ସେମାନେ ଅଧ ମାଇଲିଏ ଦୂରକୁ ଘୁଞ୍ଚିଯାଇ ଠିଆ ହେଲେ । ତାଙ୍କର ଝଟକି ଉଠୁଥିବା ଥଣ୍ଟଗୁଡ଼ିକ ବନ୍ଦ ହୋଇଯାଇଥିଲା ।

" ଏମିତି କାହିଁକି ହେଉଛି ? " ଜୋନାଥନ୍ ଭାବି ଭାବି ଆଶ୍ଚର୍ଯ୍ୟ ହୋଇ ଯାଉଥିଲା । " ପକ୍ଷୀ ସ୍ୱାଧୀନ ବୋଲି ବୁଝାଇବାଟା ଏତେ କଠିନ

କାହିଁକି ହେଉଛି ? ଯେ କେହି ନିଜେ ଟିକିଏ ସମୟ ଦେଇ ଅଭ୍ୟାସ କଲେ ଏହାର ପ୍ରମାଣ ପାଇପାରିବ । ଅଥଚ ଜଗତରେ ଏମାନଙ୍କୁ ଏଇ ସରଳ ସତ୍ୟଟି ବୁଝାଇବା ସବୁଠାରୁ ଅଧିକ କଠିନ ହେଉଛି !''

ଘଟଣାଗୁଡ଼ିକ ଏପରି ବଦଳି ଚାଲି ଥିବାରୁ ସେତେବେଳ ଯାଏଁ ଫ୍ଲେଚର ଆଖି ମିଟି ମିଟି କରୁଥିଲା । '' ତୁମେ ହଠାତ୍ କ'ଣ ଏମିତି କରିଦେଲ ? ଆମେ ସବୁ ଏଠାକୁ କିପରି ଆସିଲେ ? ''

'' ତୁମେ ଦଳରୁ ବାହାରେ ରହିବାକୁ ଇଚ୍ଛା କରିଥିଲ , ନୁହେଁ ?''

'' ହଁ , କିନ୍ତୁ ତୁମେ କିପରି .... ? ''

'' ସବୁ କଥା ପରି । ଫ୍ଲେଚ୍‌ର ! କେବଳ ଅଭ୍ୟାସ ! '' ସକାଳ ବେଳକୁ ଦଳର ସବୁ ପକ୍ଷୀ ପାଗଳାମି ପାଶୋରି ଯାଇଥିଲେ । କିନ୍ତୁ ଫ୍ଲେଚର୍ ଭୁଲି ନଥିଲା ।

'' ଜୋନାଥନ୍ ! ବହୁତ ଦିନ ଆଗରୁ ତୁମେ କହିଥିଲ । ମନେ ପକାଅ । ଦଳକୁ ବିଶେଷ ଭାବେ ଭଲ ପାଇବାକୁ, ତା' ପାଖକୁ ଫେରି ଯିବାକୁ , ଆଉ ଶିଖିବାରେ ତାଙ୍କୁ ସାହାଯ୍ୟ କରିବାକୁ ।''

'' ନିଶ୍ଚୟ । ''

'' ମୁଁ ବୁଝି ପାରୁନି । ଯେଉଁ ଦଳର ସବୁ ପକ୍ଷୀ ଏବେ ବି ତୁମକୁ ମାରି ଦେବାକୁ ଚେଷ୍ଟା କରିଥିଲେ, ତୁମେ କିପରି ସେମାନଙ୍କୁ ଭଲ ପାଇପାରୁଛ ? ''

" ଆହା, ଫ୍ଲେଚର୍ ! ତୁମେ କ'ଣ ସେକଥାକୁ ଭଲ ପାଉଛ ? ଖରାପ ବିଷୟକୁ ଆଉ ଘୃଣାକୁ କ'ଣ ତୁମେ ଭଲ ପାଅ ? ତୁମକୁ ଅଭ୍ୟାସ କରିବାକୁ ହେବ, ଆଉ ସମୁଦ୍ର ପାରାର ପ୍ରକୃତ ରୂପକୁ ଦେଖିବାକୁ ହେବ -ସେମାନଙ୍କ ଭିତରେ ଥିବା ଭଲଟାକୁ ଶିଖିବାକୁ ହେବ ।

ପ୍ରତି ପାରା ଭିତରେ ଥିବା 'ଭଲ'ଟାକୁ ଦେଖିବା ଏବଂ ସେଇଟାକୁ ଦେଖିବାକୁ ଆଉ ଜାଣିବାକୁ ସେମାନଙ୍କୁ ସାହାଯ୍ୟ କରିବାକୁ ହେବ । ଯେଉଁ ସ୍ନେହ, ପ୍ରେମ କଥା ମୁଁ ତୁମକୁ କହୁଥିଲି, ମୁଁ ଏହା ହିଁ ବୁଝୁଥିଲି । ଏଇଟା ହିଁ ତା'ର ମଜା । ତୁମେ ସେଇଟା ଜାଣିବା ଦରକାର ।"

" ମୁଁ ଗୋଟିଏ ଦୁର୍ଦ୍ଧାନ୍ତ - ଯୁବପକ୍ଷୀକୁ ଉଦାହରଣ ଭାବରେ ମନେ ରଖିଛି । ତା' ନାଁ ଫ୍ଲେଚର୍ ଲାଇଣ୍ଡ ସମୁଦ୍ର ପାରା । ସେ ଜାତିରୁ ତଡ଼ା ଖାଇ ସେଇ ଦଳ ସାଥିରେ ଜୀବନ ପଣ କରି ଲଢ଼ିବାକୁ ତିଆରି ହୋଇଯାଇଥିଲା । ହେଲେ ନିଜକୁ ଗଢ଼ିବାକୁ ସେ ଏକ ଦୂରିଆ ପାହାଡ଼ ଶିଖର ଉପରେ ଅଭ୍ୟାସ କଲା । ସେଦିନ ସେ ନରକକୁ ଯିବାକୁ ମଧ୍ୟ ଖାତିର କରି ନଥିଲା । ତେଣୁ ଆଜି ସେ ଏଠାରେ ନିଜେ ଗଢ଼ିଥିବା ସ୍ୱର୍ଗରେ । ଆଉ ଆଜି ସେଇ ସାରା ଦଳଟି ତା' ପାଖକୁ ଆଗେଇ ଆସିଛି ।"

ଫ୍ଲେଚର୍ ତା' ଗୁରୁଙ୍କ ଦିଗକୁ ମୁହଁ ବୁଲେଇଲା । ତା ଆଖିରେ ଡ଼ର ଡ଼ର ଭାବ । " ମୁଁ ଆଗେଇ ନେଉଛି ? ତୁମେ କ'ଣ କହିବାକୁ ଚାହଁ ? ମୁଁ ଆଗେଇ ନେଉଛି ? ଏଠାରେ ତ ତୁମେ କେବଳ ଆମର ଶିକ୍ଷା-ଦାତା । ତୁମେ ଆମକୁ ଛାଡ଼ି ଯାଇପାରିବ ନାହିଁ ।"

" ଯାଇପାରିବି ନାହିଁ ? ତୁମେ କ'ଣ ଭାବି ପାରୁନାହଁ ଯେ,

ଆହୁରି ଅନେକ ଦଳ ଅଛି, ଆଉ ଫ୍ଲେଚର୍ ବି ଅଛନ୍ତି । ସେମାନେ ଏଇ ଦଳ ଠାରୁ ଅଧିକ ଦରକାର କରୁଛନ୍ତି -ଗୁରୁ । ସେଇଟା କ'ଣ ଆଲୋକ ଦିଗରେ ଯିବାର ବାଟ ନୁହେଁ ? ''

'' ମୁଁ ଜୋନ୍ ! ମୁଁ ତ ଗୋଟିଏ ସରଳ,ସାଧାରଣ ସମୁଦ୍ର ପାରା ମାତ୍ର ! ଆଉ ତୁମେ .... । ''

'' .... ସେଇ ମହାନ୍ ସମୁଦ୍ରପାରାର ଏକୋଇର୍ ବଳା ବୋଲି, ମୁଁ ଭାବେ । '' ଜୋନାଥନ୍ ଦୁଃଖରେ ନିଃଶ୍ୱାସ ଛାଡ଼ି ସମୁଦ୍ର ଆଡ଼କୁ ଚାହିଁଲା । '' ମୋ ପାଖରେ ତୁମର ଆଉ କିଛି ଦରକାର ନାହିଁ । ତୁମର ଦରକାର , ନିତି ଆଗେଇ ଯିବା ପାଇଁ ପରିବେଶ; - ଆଉ ସେଇଟା ତୁମକୁ ସତରେ ଦରକାର, ଅସୀମ ଫ୍ଲେଚର୍ ! ସେ ହିଁ ତୁମର ଗୁରୁ । ତା'କୁ ହିଁ ତୁମେ ବୁଝିବା ଦରକାର । ଆଉ ଦରକାର ଅଭ୍ୟାସ । ''

କ୍ଷଣକ ପରେ ଜୋନାଥନ୍‌ର ଦେହ ଉପରକୁ ଉଠି ଉଡ଼ି ବୁଲିଲା । ଚକ୍କର କାଟି ଉଡ଼ିଲା । ବେଳକୁ ବେଳ ସେ ଉଜ୍ଜ୍ୱଳ ଦିଶୁଥିଲା ।ସେମାନେ ଗୁଜବରେ ଯେପରି ମାତିବେ ନାହିଁ, ସେଥିପ୍ରତି ଆଖି ରଖ । ଛୋଟ ଛୋଟ କଥାରେ ମନ ଖେଳାଅ ନାଇଁ । ମୋତେ ଯୋଡ଼ି ଗୁଜବ ନ ହେଉ, ଆଉ ମୋତେ ଭଗବାନ କରି ଦିଅନ । ଆଚ୍ଛା, ହେଲା ? ଫ୍ଲେଚର୍ ! ମୁଁ ସାଧାରଣ ସମୁଦ୍ରପାରାଟିଏ । ମୁଁ ଉଡ଼ିବାକୁ ଭଲପାଏ । ହୁଏତ ....''

'' ଜୋନାଥନ୍ ! ''.

'' ବିଚରା ଫ୍ଲେଚର୍ ! ତୁମର ଆଖି କହୁଥିବା କଥାକୁ ପରତେ ଯାଅ ନାହିଁ । ଯାହା କିଛି ସେମାନେ ଦେଖାନ୍ତି, ସେ ସବୁର ସୀମା ଅଛି ।

ତୁମେ ତୁମର ବିଚାରପଣିଆକୁ ଦେଖ । ଆଜି ଯାଏଁ ଯାହା ଜାଣିପାରିଛ - ସେ କଥା ବିଚାର କର । ଜାଣିବାକୁ ଲାଗିଯାଅ । ସେଥିରୁ ତୁମେ ଉଡ଼ାଣ ପାଇଁ ବାଟ ପାଇବ । ''

ଜୋନାଥନ୍‌ର ଦେହର ଉଜ୍ଜଳ ଉଣା ହୋଇ ଆସୁଥିଲା - ଧୀରେ ଧୀରେ ପତଳା ପବନ ଭିତରେ କୁଆଡ଼େ ହଜିଗଲା, ଜୋନାଥନ୍ ଲିଭିଂଷ୍ଟୋନ୍ ସମୁଦ୍ର ପାରା ।

କିଛି ସମୟ ପରେ ଫ୍ଲେଚର୍ ଟାଣିଟୁଣି ହୋଇ ଉପରକୁ ଉଠିଲା । ସେଇଠି ଭେଟିଲା ସେ ଏକାବେଳକେ ଏକ ନୂଆ ଚେଲା ଦଳ - ଯେଉଁମାନେ ଉଡ଼ାଣର ପହିଲି ପାଠ ପଢ଼ିବାକୁ, ଶିଖିବାକୁ ଆତୁର ହୋଇ ଉଠୁଥିଲେ ।

'' ଶିକ୍ଷା ଆରମ୍ଭ କରିବାକୁ ହେଲେ '', ଫ୍ଲେଚର୍ ଗମ୍ଭୀର ଭାବରେ ଆରମ୍ଭ କଲା '' ତୁମମାନଙ୍କୁ ବୁଝି ରଖିବାକୁ ହେବ, ଗୋଟିଏ ସମୁଦ୍ର ପାରା ହେଉଛି ଗୋଟିଏ ଚେତନା, ଏକ ଭାବନା - ସେ ସ୍ୱାଧୀନ, ସେ ଅସୀମ । ସେ ହେଉଛି ସେଇ ମହାନ୍ ସମୁଦ୍ର ପାରାର ଏକ ପ୍ରତିଛବି । ଆଉ, ତୁମର ସମୁଦାୟ ଦେହ, ତୁମ ପରଗୁଡ଼ିକର ଏ ଅଗରୁ ସେ ଅଗଯାଏଁ, ସବୁ ସେ ଭାବନାର ରୂପ । ତା'ଠାରୁ ଅଧିକା ନୁହେଁ କି ଅଲଗା ନୁହେଁ । ସେଇ ଚେତନା ହିଁ ସବୁର ମୂଳ । ''

ଯୁବ ସମୁଦ୍ରପାରା ସବୁ ତା'ଆଡ଼କୁ ପଚାରିଲା ପଚାରିଲା ଆଖିରେ ଚାହିଁ ରହିଲେ । '' ଆରେ ହେ'', ସେମାନେ ଭାବିଲେ । '' ଏହାର କଥାଗୁଡ଼ିକ ତ ଭଲ ଶୁଭୁଛି; କିଛି ଫନ୍ଦି ଫିକର ଥିଲା ପରି ତ ମନେ ହେଉନି । ''

ଫ୍ଲେଚର୍ ଓଜନିଆ ନିଃଶ୍ୱାସ ଛାଡ଼ିଲା, ଆଉ ଆରମ୍ଭ କଲା
" ଆଚ୍ଛା, ଠିକ୍ ଅଛି " ସେ କହିଲା । ସବୁ ସମୁଦ୍ରପାରାଙ୍କ ଉପରେ
ପରଖ କଲା ପରି ଆଖି ବୁଲେଇ ଆଣିଲା ।

" ଆସ ଏବେ ଆରମ୍ଭ କରିବା । ପହିଲେ ସମତଳ ଉଡ଼ାଣ । "
ଏତିକି କହିଲା କ୍ଷଣି ସେ ବୁଝିପାରିଲା ଯେ ତା'ବନ୍ଧୁ ସାଧୁସଚ୍ଚୋଟ
ଭାବରେ ଦେବ-ଗୁଣ ନେଇ ଆଉ ଏଣିକି ଫ୍ଲେଚର୍ ଠାରୁ ଅଧିକ ହୋଇ
ରହି ନାହିଁ ।

ସୀମା ନାହିଁ । ଜୋନାଥନ୍ ! ସେ ଭାବିଲା । ଆଚ୍ଛା,ତେବେ, ସେ
ସମୟ ଆଉ ବେଶୀ ଦୂର ନୁହେଁ,ଯେତେବେଳେ ଏଇ ପତଳା ପବନ
ଦେଇଁ ମୁଁ ତୁମର କୂଳରେ ପହଞ୍ଚିଯିବି, ଆଉ ଉଡ଼ାଣର ଗୋଟିଏ ଦୁଇଟି
କୌଶଳ ଦେଖାଇଦେବି !

ଫ୍ଲେଚର୍ ଚେଷ୍ଟା କରୁଥିଲା ନିଜକୁ ଠିକ୍ ଭାବରେ ଛାତ୍ରଙ୍କୁ
ଦେଖାଇବାକୁ, ଟିକିଏ ଗମ୍ଭୀର ଭାବରେ । ହେଲେ, ସବୁ ଛାତ୍ର ପ୍ରକୃତରେ
ଯାହା, ସେମାନେ ସେଇପରି ଭାବରେ ହିଁ ତା'ଆଖିରେ ହଠାତ୍
ଦେଖାଗଲେ । ଅବଶ୍ୟ କ୍ଷଣକ ପାଇଁ ଏଇଟା ଘଟିଗଲା । ସେ ଯାହା
ଦେଖିଲା, ସତରେ ସେଇଆ ହିଁ ସେ ଭଲ ପାଉଥିଲା, ସବୁଠାରୁ ଅଧିକ
ସେଇଆ ହିଁ ସେ ଚାହୁଁଥିଲା । ସୀମା ନାହିଁ । ଜୋନାଥନ୍ ! ସେ ଭାବିଲା,
ଆଉ ହସିଲା । ତା' ଜାତିର ଶିକ୍ଷା ଆରମ୍ଭ ହୋଇଗଲା ।



ଯିଏ ନିଜେ ଠିକ୍ ଚାଲିଛି ଜାଣି ନିଜେ ନିଜର ନିୟମ ଗଢ଼ନ୍ତି ...ଯିଏ କିଛି କାମକୁ ଭଲ ରୂପେ ( କେବଳ ନିଜ ପାଇଁ ହେଲେ ବି ) କରିବାରେ ବିଶେଷ ଆନନ୍ଦ ପାଆନ୍ତି ...ଯିଏ ମାନନ୍ତି ଯେ ଜୀବନରେ ଏହି ଆଖି ଦେଖା ***ଜିଇଁବା*** ଠାରୁ ଅନେକ କିଛି ରହିଛି : ସେମାନେ ଜୋନାଥନ୍‌କୁ ସବୁ ଦିଗରୁ ଗ୍ରହଣ କରିନେବେ । ଅନ୍ୟମାନେ ସାଧାରଣ ଭାବରେ ଏହାକୁ ମୁକ୍ତି ଓ ଉଡ଼ାଣର ଏକ ହୃଦୟସ୍ପର୍ଶୀ ଦୁଃସାହସିକତା ଭାବେ ଦେଖିବେ । ବହିଟି, ସରଳ ଭାଷାରେ କହିଲେ , ଏକ ଚମତ୍କାର କୃତୀ ।

**ଏହାର ମୂଳ ସଂସ୍କରଣଟି ଦଶଲକ୍ଷରୁ ବେଶୀ ବିକ୍ରି ହେଲାଣି ।**

ମୂଲ୍ୟ - ୪୦.୦୦ ଟଙ୍କା ମାତ୍ର